## ଅମର ଜୀବନୀମାଳା

# ସାର୍ ଆଶୁତୋଷ

ଲେଖକ :—

ଲାଲା ନଗେନ୍ଦ୍ର କୁମାର ରାୟ

ପ୍ରାପ୍ତିସ୍ଥାନ :—

ଦି ଉତ୍କଳ ଷ୍ଟୋର୍ସ

ବାଲୁବଜାର, କଟକ—୨

ପ୍ରକାଶକ :—

**ଉତ୍କଳ-ପ୍ରକାଶନୀ**

କଟକ—୧

ପ୍ରଥମ ସଂସ୍କରଣ
୧୯୫୭

ମୂଲ୍ୟ ଟ ୦ ।✓

ମୁଦ୍ରାକର—

ଶ୍ରୀ ପଦ୍ମଚରଣ ଦାଶ
ଶ୍ରୀ ସତ୍ୟନାରାୟଣ ପ୍ରେସ
[illegible], କଟକ—୨

# ସାର୍ ଆଶୁତୋଷ

## ବଂଶ ପରିଚୟ

ବଙ୍ଗଳା ଭାଷା ଓ ସାହିତ୍ୟ ଏବଂ ବଙ୍ଗଦେଶରେ ଶିକ୍ଷା ପ୍ରସାର ନିମିତ୍ତ ତିନି ଜଣ ବଙ୍ଗାଳୀ ସୁପ୍ରସିଦ୍ଧ । ତିନିହେଁ ଯାକ ହେଉଛନ୍ତି ଇଂରେଜ ଅମଳର ଲୋକ । ଜଣେ ହେଉଛନ୍ତି ସୁପଣ୍ଡିତ, ଜଣେ ହେଉଛନ୍ତି ଦାର୍ଶନିକ କବି ଏବଂ ଅନ୍ୟ ଜଣେ ହେଉଛନ୍ତି ପ୍ରସିଦ୍ଧ ଓକିଲ ଓ ଶିକ୍ଷାବ୍ରତୀ । ପ୍ରଥମ ଜଣଙ୍କର ନାମ ହେଉଛନ୍ତି ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଦ୍ୱିତୀୟ ବ୍ୟକ୍ତି ହେଉଛନ୍ତି ବିଶ୍ୱକବି ରବୀନ୍ଦ୍ରନାଥ ଏବଂ ତୃତୀୟ ବ୍ୟକ୍ତି ହେଉଛନ୍ତି ସାର ଆଶୁତୋଷ । ଏହାଙ୍କର ଦୁଇ ପୁଅ ମଧ୍ୟରୁ ଜ୍ୟେଷ୍ଠ ରମାପ୍ରସାଦ କଲିକତା ହାଇକୋର୍ଟର ବିଚାରପତି ଏବଂ କନିଷ୍ଠ ଶ୍ୟାମାପ୍ରସାଦ ସୁପ୍ରସିଦ୍ଧ ଜନନାୟକ ଏବଂ ପଣ୍ଡିତ ଜବାହରଲାଲଙ୍କ ପ୍ରତିଦ୍ୱନ୍ଦୀ । ଅଳ୍ପଦିନ ତଳେ କାଶ୍ମୀରଠାରେ ଅସ୍ୱାଭାବିକ ଭାବରେ ଏହାଙ୍କର ହଠାତ୍ ମୃତ୍ୟୁ ଘଟିଥିଲା ଏବଂ ସେହି ସମ୍ବାଦରେ ସମଗ୍ର ଭାରତବର୍ଷ ଶୋକରେ ଅଧୀର ହୋଇଥିଲା ।

ଗଙ୍ଗାନଦୀର ପଶ୍ଚିମ କୂଳରେ ଜୀରଟ ବଳାଗଡ଼ ନାମକ ଗୋଟିଏ ଗ୍ରାମ ଅଛି । ଗ୍ରାମଟି ହୁଗୁଲୀ ଜିଲା ଅନ୍ତର୍ଗତ । ସେହି ଗ୍ରାମରେ ଏକ ମୁଖାର୍ଜୀ ପରିବାର ବାସ କରୁଥିଲେ । ସେଥିରେ ଜନ୍ମ ହୋଇଥିଲେ ଗଙ୍ଗାପ୍ରସାଦ ମୁଖାର୍ଜୀ । ତାଙ୍କ ଜନ୍ମ ତାରିଖ ହେଉଛନ୍ତି ୧୬ ଡିସେମ୍ବର ୧୮୩୬ ଖ୍ରୀଷ୍ଟାବ୍ଦ । ଗ୍ରାମ ପାଠଶାଳାରେ ପଢା ଶେଷ କରି ଗଙ୍ଗାପ୍ରସାଦ କଲିକତା ପଢିବାକୁ ଆସିଥିଲେ ।

ସେତେବେଳେ କଲିକତାରେ ଉଚ୍ଚ ଶିକ୍ଷା ପାଇଁ ଉଚ୍ଚ-ଇଂଲିଶ ସ୍କୁଲ ଥିଲା । କଲିକତା ବିଶ୍ୱବିଦ୍ୟାଳୟ ସେତେବେଳେ ପ୍ରତିଷ୍ଠିତ ହୋଇ ନ ଥାଏ । କଲିକତାର ରାସ୍ତା ମଧ୍ୟ ଆଜିକାଲି ପରି ସୁନ୍ଦର ଓ ପରିଷ୍କାର କିମ୍ବା ଆଲୋକିତ ହୋଇ ନ ଥାଏ । ସହର ପାଖକୁ ଲାଗି ଜଙ୍ଗଲ ଓ ବହୁତ ବିଲ ରହିଥାଏ । ଏଥିପାଇଁ ସାଧାରଣ ଗରିବ ଲୋକଙ୍କ ପକ୍ଷରେ କଲିକତା ଖୁବ ଅସ୍ୱାସ୍ଥ୍ୟକର ସ୍ଥାନ ଥିଲା ।

କଲିକତାକୁ ଗଲେ ବହୁତ ଅସୁବିଧା ଓ କଷ୍ଟ ଭୋଗିବାକୁ ପଡ଼ିବ ଏ କଥା ଗଙ୍ଗାପ୍ରସାଦ ଜାଣିଥିଲେ ମଧ୍ୟ ପଢ଼ିବା ପାଇଁ ବ୍ୟାକୁଳ ହୋଇ ସେ କଲିକତାକୁ ଆସିଥିଲେ ଏବଂ ତେବେକାର ପ୍ରସିଦ୍ଧ ଡେଭିଡ୍ ହେୟାର ସ୍କୁଲରେ ନାମ ଲେଖାଇ ଥିଲେ । ଏହି ସ୍କୁଲରୁ ସେ ଏଣ୍ଟ୍ରାନ୍ସ ପାଶ କରିଥିଲେ ୧୮୫୭ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ କଲିକତା ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବା ବର୍ଷରେ ।

ସେ ଖୁବ ଅଧ୍ୟବସାୟୀ ଓ ପରିଶ୍ରମି ଛାତ୍ର ଥିଲେ ବୋଲି କ୍ଲାସରେ ସବୁ ସହପାଠୀଙ୍କ ଅପେକ୍ଷା ଉଚ୍ଚ ସ୍ଥାନ ପାଉଥିଲେ । ସେ ସବୁବେଳେ ପଢ଼ା ଲେଖାରେ ଲାଗି ରହୁଥିଲେ ।

୧୮୬୧ ଖ୍ରୀଷ୍ଟାବ୍ଦରେ ଗଙ୍ଗାପ୍ରସାଦ ଖୁବ ସୁଖ୍ୟାତିର ସହିତ ବି. ଏ. ପାଶ କରିଥିଲେ । ସେତେବେଳେ ବି. ଏ. ପାଶ କରିବା ଲୋକଙ୍କୁ ସରକାରୀ ଚାକିରିର ଅଭାବ ନ ଥିଲା । ମାତ୍ର ଗଙ୍ଗାପ୍ରସାଦ ଚାକିରି କରିବାକୁ ପସନ୍ଦ କରି ନ ଥିଲେ, ସେ ଅନ୍ୟ କିଛି ବିଷୟ ପଢ଼ିବା ପାଇଁ ବ୍ୟଗ୍ର ହୋଇଥିଲେ । ତାଙ୍କର ଆତ୍ମୀୟ ଓ ଅଭିଭାବକମାନେ ତାଙ୍କୁ ଡେପୁଟି ଚାକିରି କରିବାକୁ କହିଲେ ମଧ୍ୟ ସେକଥା ସେ ନ ଶୁଣି ଡାକ୍ତରୀ ପଢ଼ିବା ପାଇଁ ମେଡ଼ିକାଲ କଲେଜରେ ଭର୍ତ୍ତି ହୋଇଥିଲେ ।

ବି. ଏ. ପାଶ କରିବା ପୂର୍ବରୁ ତାଙ୍କର ବିବାହ ହୋଇ ଯାଇଥିଲା । କଲିକତା ଭବାନୀପୁର ଅଞ୍ଚଳର କଂସାରି ପଡ଼ାରେ ହରିଲାଲ ଚୌଧୁରୀ ନାମକ ଜଣେ ପଣ୍ଡିତ ବାସ କରୁଥିଲେ । ତାଙ୍କର ଜଗତାରିଣୀ ନାମ୍ନୀ ଏକ କନ୍ୟା ଥିଲା । କନ୍ୟାଟି ଖୁବ ସୁନ୍ଦରୀ ଓ ସ୍ୱାସ୍ଥ୍ୟବତୀ ଥିଲା । ଏହାଙ୍କ ସଙ୍ଗରେ ଗଙ୍ଗାପ୍ରସାଦଙ୍କର ବିବାହ ହୋଇଥିଲା ।

## ଜନ୍ମକାଳ

ଗଙ୍ଗାପ୍ରସାଦ ଯେତେବେଳେ ମେଡ଼ିକାଲ କଲେଜର ତୃତୀୟ ଶ୍ରେଣୀରେ ପଢୁଥିଲେ ଅର୍ଥାତ୍ ୧୮୬୪ ଖ୍ରୀଷ୍ଟାବ୍ଦରେ ଆଶୁତୋଷଙ୍କର ଜନ୍ମ ହୋଇଥିଲା । ଜନ୍ମ ବେଳେ ତାଙ୍କର ସ୍ୱାସ୍ଥ୍ୟ ଏପରି ଭଲ ଥିଲା ଯେ ଦେଖିଲା ଲୋକ ମୁଗ୍ଧ ହୋଇ ଯାଉଥିଲେ । ସମସ୍ତେ କହୁଥିଲେ ଏହି ଶିଶୁଟି ବଡ଼ ଦେଶପ୍ରସିଦ୍ଧ ହେବ । କିନ୍ତୁ ଶିଶୁଟି ବଢ଼ିବା ସଙ୍ଗେ ସଙ୍ଗେ କ୍ରମେ ଶୁଖି ଯିବାକୁ ଲାଗିଲା । ଏହା ଦେଖି ବାପ ମାଆଙ୍କର ବଡ଼ ଭାବନା ହୋଇଥିଲା ।

ଗଙ୍ଗାପ୍ରସାଦଙ୍କର ଡାକ୍ତରି ପଢ଼ା ଶେଷ ହେବାକୁ ଆହୁରି ଦୁଇ ବର୍ଷ ବାକି ଥାଏ ବୋଲି ଜଗତାରିଣୀ ପୁଅକୁ ନେଇ ଆପଣା ବାପ ଘରେ ରହୁଥିଲେ । ସେଠାରେ ସମସ୍ତେ ଖୁବ୍ ଆଦରରେ ଶିଶୁର ସେବା ଶୁଶ୍ରୂଷା କରୁଥିଲେ ।

ଏହାପରେ ୧୮୬୬ ଖ୍ରୀଷ୍ଟାବ୍ଦରେ ଗଙ୍ଗାପ୍ରସାଦ ଅତ୍ୟନ୍ତ ସମ୍ମାନ ସହିତ ଡାକ୍ତରି ପାଶ କଲେ । ସେତେବେଳେ ଡାକ୍ତରି ପଢ଼ା ୫ ବର୍ଷରେ ଶେଷ ହେଉଥିଲା । ଡାକ୍ତରି ପାଶ୍ କରି ଗଙ୍ଗାପ୍ରସାଦ ସରକାରୀ ଚାକିରି ଗ୍ରହଣ କରି ନ ଥିଲେ । ସେ ନିଜେ ସ୍ୱାଧୀନ ଭାବରେ ଡାକ୍ତରି କରିବାକୁ ମନସ୍ଥ କରିଥିଲେ ।

ଗଙ୍ଗାପ୍ରସାଦ ନିଜ ବନ୍ଧୁ ପ୍ରସନ୍ନକୁମାର ବସୁଙ୍କ ପରାମର୍ଶ ଅନୁସାରେ ଭବାନୀପୁର ଠାରେ ଗୋଟିଏ ଡାକ୍ତରି ଦୋକାନ

ଖୋଲିଥିଲେ । ଗଙ୍ଗାପ୍ରସାଦଙ୍କର ସଖୀକା ଓ ଦୁର୍ଗା ନାମକ ଅନ୍ୟ ଦୁଇଟି ସାନ ଭଉଣୀ ଥିଲେ । ଏହି ସଖୀକାଙ୍କର ଶ୍ୱଶୁର ଚନ୍ଦ୍ରମୋହନ ଗାଙ୍ଗୁଲି ସେତେବେଳେ ଭବାନୀପୁରର ଏକ ବିଶିଷ୍ଟ ଡାକ୍ତର ଥିଲେ । ଡାକ୍ତର ଗାଙ୍ଗୁଲି ଗଙ୍ଗାପ୍ରସାଦଙ୍କୁ ଭବାନୀପୁରଠାରେ ଡାକ୍ତରୀ ଦୋକାନ କରିବାକୁ ମଧ୍ୟ ସାହାଯ୍ୟ କରିଥିଲେ । ଗଙ୍ଗାପ୍ରସାଦ ତାଙ୍କର ମଳଙ୍ଗା ଲେନ୍‌ର ଭଡ଼ା ଘର ଛାଡ଼ିଦେଇ ରସା ରୋଡ଼ ଉପରେ ଗୋଟିଏ ଘର ଭଡ଼ା ନେଇ ଡାକ୍ତରି ଆରମ୍ଭ କରିଥିଲେ । ସେତେବେଳେ ଅବଶ୍ୟ ପାଶ କଲା ଡାକ୍ତର ଅତି ଅଳ୍ପ ସଂଖ୍ୟକ ଥିଲେ । ଏଣୁ କରି ଅଳ୍ପଦିନ ମଧ୍ୟରେ ଗଙ୍ଗାପ୍ରସାଦଙ୍କର ଯଶ ବିସ୍ତାର ହୋଇ ଯାଇଥିଲା ଏବଂ ଅମୃତହସ୍ତ ଡାକ୍ତର ବୋଲି ପ୍ରତ୍ୟେକ ବହୁ ରୋଗୀ ତାଙ୍କ ପାଖକୁ ଚିକିତ୍ସା ପାଇଁ ଆସିବାକୁ ଲାଗିଲେ । କ୍ରମେ ତାଙ୍କର ଆୟ ମଧ୍ୟ ବଢ଼ିବାକୁ ଲାଗିଲା ।

ଡାକ୍ତରୀ ଔଷଧ ନାନା ରଙ୍ଗର ଅଟେ । ଆଶୁତୋଷ ବାବାଙ୍କ ଡାକ୍ତରଖାନାରେ ବସି ରୋଗୀଙ୍କ ହାତରେ ଏହି ସବୁ ରଙ୍ଗ ବେରଙ୍ଗ ଔଷଧ ଶିଶି ଦେଖି ଖୁବ୍ ଖୁସି ହେଉଥିଲେ ଏବଂ ନିଜେ ଶିଶିରେ ରଙ୍ଗପାଣି ପୂରାଇ ଖେଳୁଥିଲେ । ଏମିତିକା ଦିନେ ନିକଟର ଗୋଟିଏ ପୋଖରୀ କୂଳରେ ଖେଳୁ ଖେଳୁ ସେ ପାଣିରେ ପଡ଼ି ଯାଇଥିଲେ । ଦୈବକ୍ରମେ ଡାକ୍ତରଖାନାର ଜଣେ ଚାକର ତାହା ଦେଖିପାରି ତାଙ୍କୁ ପାଣିରୁ ଉଦ୍ଧାର କରିଥିଲା ।

ପିତା ମାତାଙ୍କ ପାଖରେ ଏହି ଖବର ପହଞ୍ଚନ୍ତେ ସେମାନେ ଭୟରେ ତଟସ୍ଥ ହୋଇ ରସା ରୋଡ଼ ଭଡ଼ାଘର ଛାଡ଼ି ପଦ୍ମପୋଖରୀ ରୋଡ଼କୁ ଚାଲିଗଲେ ଏବଂ ପୁଅକୁ ସବୁବେଳେ ଆଖି ଉପରେ ରଖିଥିଲେ ।

ଏହି ନୂଆ ଭଡ଼ାଘରକୁ ଉଠିଆସିବା ପରେ ଗଙ୍ଗାପ୍ରସାଦଙ୍କ ରୋଜଗାର ଅସ୍ୱାଭାବିକ ଭାବରେ ବେଶୀ ହୋଇଗଲା ଏବଂ ଅତି ଅଳ୍ପକାଳ ମଧ୍ୟରେ ସେ ଜଣେ ଧନୀଲୋକ ହୋଇଗଲେ । ହାତରେ ପଇସା ବହୁତ ହେଲାରୁ ଗଙ୍ଗାପ୍ରସାଦ ଆଉ ଭଡ଼ାଘରେ ରହିବା ପସନ୍ଦ ନ କରି ରସା ରୋଡ଼ ଉପରେ ଖଣ୍ଡିଏ ଜମି କିଣିଲେ ଏବଂ ସେଠାରେ ନିଜ ପସନ୍ଦ ମୁତାବକ ଏକ ପ୍ରକାଣ୍ଡ କୋଠାଘର ବନାଇଥିଲେ । ୧୮୭୨ ଖ୍ରୀଷ୍ଟାବ୍ଦ ପଞ୍ଚାଙ୍ଗାନ୍ତ୍ର ଦିନ ସେ ତାଙ୍କର ଏହି ନୂଆ ଘରକୁ ଯାଇଥିଲେ ଏବଂ ଏହି ଉପଲକ୍ଷରେ ଖୁବ୍ ସମାରୋହ ମଧ୍ୟ କରିଥିଲେ । ଧରବସିଲେ ବର୍ଷ ଛଅଟା ମଧ୍ୟରେ ଗଙ୍ଗାପ୍ରସାଦଙ୍କର ଏ ଭଳି ଆର୍ଥିକ ଉନ୍ନତି ହୋଇଥିଲା । ଆଶୁତୋଷଙ୍କୁ ଏତେବେଳକୁ ମାତ୍ର ୯ ବର୍ଷ । ଆଜି ପର୍ଯ୍ୟନ୍ତ ସେହି ରସାରୋଡ଼ର କୋଠା ଆଶୁତୋଷଙ୍କର ପାରିବାରିକ ବାସଗୃହ ହୋଇ ରହିଅଛି ।

## ବିଦ୍ୟାରମ୍ଭ

ଯେତେ ରୋଜଗାର କଲେ ଏବଂ ଶତ ଶତ ରୋଗୀ ଦେଖିବାରେ ବ୍ୟସ୍ତ ରହୁଥିଲେ ମଧ୍ୟ ଗଙ୍ଗାପ୍ରସାଦ ପୁଅର ଠିକଣାଖ ଖବର ନେଉଥିଲେ ଏବଂ ସବୁବେଳେ ପୁଅ ଉପରେ କଡ଼ା ନଜର ରଖିଥିଲେ । ଘରେ ବଙ୍ଗଳା ବର୍ଣ୍ଣ ପରିଚୟ ହେଲା ପରେ ସେ ପୁଅକୁ ଚକ୍ରବେଡ଼ିଆ ଶିଶୁ ପାଠଶାଳାକୁ ପଠାଇଥିଲେ । ସେତେବେଳକୁ ଆଶୁତୋଷ ୫ ବର୍ଷର ଶିଶୁ । ଘରୁ ଜଣେ ଚାକର ତାଙ୍କୁ ପ୍ରତ୍ୟହ ପାଠଶାଳାରେ ଛାଡ଼ି ଆସୁଥିଲା । ଉକ୍ତ ପାଠଶାଳାଟି ସେଠାର ଜଣେ ଭଦ୍ରବ୍ୟକ୍ତିଙ୍କର ଠାକୁର ଦେଉଳରେ ବସୁଥିଲା । ଆଶୁତୋଷ ପ୍ରଥମ ଦିନ ପାଠଶାଳାରୁ ଫେରି ମାଆଙ୍କ ପାଖରେ କହିଲେ ଯେ ସେ ସେହି ପାଠଶାଳାରେ ପଢ଼ିବେ ନାହିଁ । ତାହା ପାଠଶାଳା ନୁହେଁ ଗୋଠାଏ ଆଖଡ଼ା ଘର । ସ୍ତ୍ରୀଙ୍କ ପାଖରୁ ପୁଅର ଅଭିଯୋଗ ଶୁଣି ଗଙ୍ଗାପ୍ରସାଦ ନିଜେ ଯାଇ

ଭୁଲିଥିଲେ ସେ କଥାଟା ସତ । ସେଠାରେ ଦେଢ଼ଶହେ ପିଲା ବସି ପାଠ ପଢ଼ା ବାହାନାରେ କେବଳ ପାଟିତୁଣ୍ଡ କରୁଛନ୍ତି । ଗୁରୁ ଅନ୍ଧ ହେଲେ । ଏମିତି ଜାଗାରେ ପାଠପଢ଼ା ହୋଇ ନ ପାରେ । ଗଙ୍ଗାପ୍ରସାଦ ଗୃହସ୍ୱାମୀ ନୀଳମଣି ମିଶ୍ରଙ୍କୁ କହି ପାଠଶାଳା ପାଇଁ ୩ ବଖରା ସ୍ୱତନ୍ତ୍ର ଘରର ବ୍ୟବସ୍ଥା କରିଥିଲେ । ଏହି କଥାଟି ଅବଶ୍ୟ ଅତି ସାମାନ୍ୟ । ବାସ୍ତବତଃ ଆଜକୁ ଶହେ ବର୍ଷ ପୂର୍ବେ କଲିକତାରେ ଘଟିବା କିଛି ମାତ୍ର ବିଚିତ୍ର ନ ଥିଲା । ମାତ୍ର ଆଶୁତୋଷଙ୍କର ୫ ବର୍ଷ ବୟସରେ ବିଦ୍ୟାଳୟକୁ ଯାଇ ପ୍ରଥମ ଦିନ ଏ ଭଳି ଅଭିଯୋଗକୁ ଗଙ୍ଗାପ୍ରସାଦ ପୁଅର ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ବୋଲି ଦୃଢ଼ ବିଶ୍ୱାସ କରିଥିଲେ ।

ଗଙ୍ଗାପ୍ରସାଦ ନିଜେ ପ୍ରତିଦିନ ପାହାନ୍ତାରୁ ଉଠୁଥିଲେ ବୋଲି ପିଲଦିନୁ ପୁଅର ମଧ୍ୟ ସେହି ଅଭ୍ୟାସ କରାଇଥିଲେ । ପହିଲେ ପହିଲେ ଏତେ ସକାଳୁ ଉଠିବା ଶିଶୁ ପକ୍ଷରେ ବଡ଼ କଷ୍ଟକର ହୋଇଥିଲା; କିନ୍ତୁ ପରେ ତାହା ଅଭ୍ୟାସ ହୋଇଗଲା । ତାଙ୍କୁ ଆଉ ଡାକ ହାକ କରିବାକୁ ପଡ଼ୁ ନ ଥିଲା । ସେ ନିଜେ ରାତି ନ ପାହୁଣୁ ଉଠି ପଡ଼ୁଥିଲେ ଏବଂ ଦିନେ ଦିନେ ବାବାଙ୍କ ଆଗରୁ ମଧ୍ୟ ତାଙ୍କର ନିଦ ଭାଙ୍ଗି ଯାଉଥିଲା ।

ପ୍ରଭାତରୁ ଉଠି ନିତ୍ୟକର୍ମ ସାରି ଗଙ୍ଗାପ୍ରସାଦ ପୁଅକୁ ନେଇ ଖଣ୍ଡେ ଦୂର ବୁଲି ଯାଉଥିଲେ ଏବଂ ଯାଇଁ ଯାଇଁ ବାଟରେ ନାନାଦି କାହାଣୀ ଓ ଦେଶ ବିଦେଶର କଥା କହୁଥିଲେ । ବାବାଙ୍କ ତୁଣ୍ଡରୁ ସେ ସବୁ ଗପ ଶୁଣି ଆଶୁତୋଷଙ୍କ ମନ ଆନନ୍ଦରେ ଭରି ଯାଉଥିଲା । ବାବାଙ୍କଠାରୁ ମହାପୁରୁଷମାନଙ୍କ ଜୀବନ କାହାଣୀ ସେ ଖୁବ ମନ ଦେଇ ଶୁଣୁଥିଲେ ଓ ନାନା ପ୍ରକାର ପ୍ରଶ୍ନ ମଧ୍ୟ କରୁଥିଲେ । ଆଶୁତୋଷଙ୍କର ସ୍ମରଣ ଶକ୍ତି ଭାରି ପ୍ରଖର ଥିଲା । ସେ ଥରେ ଯାହା ଶୁଣୁଥିଲେ ତାହା ମନେ ରଖି ପାରୁଥିଲେ । ପ୍ରବଳ କୌତୁହଳ

ବଢ଼ାଇବା ନିମିତ୍ତ ଗଙ୍ଗାପ୍ରସାଦ ନାନା ପ୍ରକାରର ନୂଆ ନୂଆ ବହି କିଣି ଆଣୁଥିଲେ । ଏମିତି ଭାବରେ ବହି ଉପରେ ମନ ରଖିବାରୁ ଆଶୁତୋଷ ଖେଳାକୁଦ ମଧ୍ୟ ଛାଡ଼ି ଦେଇ ବହି ନେଇ ପଢ଼ି ବସୁଥିଲେ, ଅନ୍ୟ କେଉଁଥିରେ ମନ ଦେଉ ନ ଥିଲେ ।

ଏଭଳି ଭାବରେ ଦ୍ରୁତ ବହି ପଢ଼ିବାରୁ ପାଠଶାଳାର ଅନ୍ୟ କୌଣସି ଛାତ୍ର ତାଙ୍କ ସମକକ୍ଷ ହୋଇ ପାରୁ ନ ଥିଲେ । ସେମାନେ ସମସ୍ତେ ତଳେ ପଡ଼ି ରହିଲେ ଏବଂ ଆଶୁତୋଷ ଉପରକୁ ଉଠିଗଲେ । ୬ ବର୍ଷରେ ଯେତିକି ପଢ଼ିବା କଥା ସେତିକି ପାଠ ଦୁଇଟି ବର୍ଷରେ ସମାପ୍ତ କରି ଆଶୁତୋଷ ଉକ୍ତ ପାଠଶାଳାରୁ ଉତ୍ତୀର୍ଣ୍ଣ ହେଲେ । ତାଙ୍କୁ ପଢ଼ାଇବା ପାଇଁ ସେଠାରେ ଆଉ ଉପର ଶ୍ରେଣୀ ନ ଥିଲା । ଆସିଲା ବେଳେ ପାଠଶାଳାର ଅବଧାନ କହିଥିଲେ "ବାବୁ, ଆପଣଙ୍କର ଏହି ପୁଅ ଜଣେ କ୍ଷଣଜନ୍ମା ମହାପୁରୁଷ । ଯାହା ଜିଭରେ ମା ସରସ୍ୱତୀଙ୍କ ଲିଖନ ମୁଁ ବାଜୁଛି ।"

ପାଠଶାଳାରୁ ପାଠ ଶେଷକରି ଆଶୁତୋଷ ବାପାଙ୍କ ପାଖରେ ଲେଖା ପଢ଼ା ଶିଖିବାକୁ ଲାଗିଲେ । ଏତେ ଅଳ୍ପ ବୟସରେ ପୁଅକୁ କୌଣସି ଇଂରେଜୀ ସ୍କୁଲରେ ଭର୍ତ୍ତି କରିବାକୁ ଗଙ୍ଗାପ୍ରସାଦଙ୍କର ଆଦୌ ଇଚ୍ଛା ନ ଥିଲା । ଏଣୁ କରି ନିଜେ ପଢ଼ାଉଥିଲେ ଏବଂ ଅନ୍ୟ ଉପଯୁକ୍ତ ଗୃହ ଶିକ୍ଷକ ମଧ୍ୟ ରଖି ଦେଇଥିଲେ ।

ସ୍ୱାଧୀନ ଭାବରେ ଲେଖାପଢ଼ା କରିବାର ସୁଯୋଗ ପାଇ ଆଶୁତୋଷଙ୍କ ପଢ଼ା ପ୍ରତି ଆଗ୍ରହ ଅଧିକ ବଢ଼ିଗଲା ଏବଂ ତାହା ସଙ୍ଗେ ସଙ୍ଗେ ଅଧିକ ପ୍ରଖର ହୋଇ ଉଠିଲା ତାଙ୍କର ସ୍ମରଣଶକ୍ତି । ପାଠଶାଳାରେ ପଢ଼ିବା ବେଳଠାରୁ ନିଜର ମାତୃଭାଷା ବଙ୍ଗଳା ଉପରେ ଆଶୁତୋଷଙ୍କର ଅଧିକ ଆକର୍ଷଣ ଜନ୍ମିଥିଲା ଏବଂ ସେହି ଆକର୍ଷଣ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସ୍ଥାୟୀ ହୋଇଥିଲା । ଊନବିଂଶ ଶତାବ୍ଦୀର

ଶେଷ ଅଡ଼କୁ ଆମ ଦେଶର ଲୋକେ ଅଳ୍ପ କିଛି ଇଂରେଜି ପଢ଼ି ମାତୃଭାଷାକୁ ଯେପରି ହେୟ କରିବାକୁ ସଭ୍ୟତା ବୋଲି ଭାବୁଥିଲେ, ଆଶୁତୋଷ ସେପରି ଭାବ ନ ଥିଲେ ।

କ୍ରମେ ଗଙ୍ଗାପ୍ରସାଦ ପୁଅକୁ ଉପର ଶ୍ରେଣୀର ପାଠ୍ୟ ବର୍ଦ୍ଧମାନ ଆଣି ଦେଲେ ଏବଂ ଆଶୁତୋଷ ସେ ସମସ୍ତ ପଢ଼ିବାକୁ ଲାଗିଲେ । ଯେଉଁଠାରେ ବୁଝିପାରୁ ନ ଥିଲେ ତାହାକୁ ବାବାଙ୍କଠାରୁ ବୁଝି ନେଉଥିଲେ । ତାଙ୍କର ବୟସର ଅନ୍ୟ କୌଣସି ପିଲାପକ୍ଷେ ସେ ସବୁ ବହି ପଢ଼ିବା ଓ ତହିଁର ମର୍ମ ବୁଝିବା ଅସମ୍ଭବ ଥିଲା ! ସେ ଯେଉଁ ସବୁ ବହି ଅତି ସହଜରେ ବୁଝି ଯାଉଥିଲେ ଅନ୍ୟ ପିଲାଏ ତହିଁରୁ ପଦେ ଅଧେ ମୁଣ୍ଡା ବୁଝିପାରୁ ନ ଥିଲେ ।

## ହାଇସ୍କୁଲ ପଢା

ଗଙ୍ଗାପ୍ରସାଦ ନିଜେ ଖୁବ ଭଲ ଭାବରେ ମାନସିକ ଅଙ୍କ କରି ପାରୁଥିଲେ । ଆଶୁତୋଷ ବାବାଙ୍କଠାରୁ ଉକ୍ତ ବିଦ୍ୟାଟି ମଧ୍ୟ ଶିକ୍ଷା କରିଥିଲେ । ଏହାପରେ ଇତିହାସ, ଭୂଗୋଳ ଏବଂ ଇଂରେଜିର ନୀତିଗର୍ଭକ ବହି ମଧ୍ୟ ସେ ପଢ଼ିଥିଲେ । ଏଣୁ କରି ଇଂରେଜି ସ୍କୁଲରେ ତାଙ୍କର ନାମ ଲେଖାଇବା ଦରକାର ହୋଇ ଉଠିଲା । ସେତେବେଳେ ଭବାନୀପୁରଠାରେ ସାଉଥ ସୁବରବାନ୍ ବିଦ୍ୟାଳୟ ଖୁବ୍ ପ୍ରସିଦ୍ଧ ଥିଲା । ସେଠାର ହେଡ୍‌ମାଷ୍ଟର ଥିଲେ ପଣ୍ଡିତ ଶିବନାଥ ଶାସ୍ତ୍ରୀ । ସେ ଯେପରି ଅମାୟିକ, ସ୍ନେହପ୍ରବଣ ଜ୍ଞାନୀ ପୁରୁଷ ଥିଲେ, ସେପରି ନୀତିବାଦୀ ଏବଂ ଛାତ୍ରମାନଙ୍କୁ ଚଳାଇବାରେ ବିଚକ୍ଷଣ ବ୍ୟକ୍ତି ଥିଲେ । ସେକେଣ୍ଡ ମାଷ୍ଟର ଥିଲେ ବାବୁ ଆଶୁତୋଷ ବିଶ୍ୱାସ ।

ଗଙ୍ଗାପ୍ରସାଦ ଯେତେବେଳେ ପୁଅକୁ ଏହି ସ୍କୁଲରେ ନାମ ଲେଖାଇବାକୁ ନେଲେ ସେତେବେଳେ ପରୀକ୍ଷା କରି ଦେଖାଗଲା ଯେ

ସେ ଏଣ୍ଟ୍ରାନ୍ସ କ୍ଲାସର ସବୁଠାକ ଦଣ୍ଡ ଘରେ ମଡ଼ି ନଣସ୍ତ କରିଅଛନ୍ତି । ହେଲେ ଜଣ ହେବ ବୟସ ଏତେ ଅଳ୍ପ ଯେ ତାଙ୍କୁ ଏଣ୍ଟ୍ରାନ୍ସ କ୍ଲାସରେ ନେଇ ହେବ ନାହିଁ । ସୁତରାଂ ବାଧ୍ୟ ହୋଇ ହେଡମାଷ୍ଟର ମହାଶୟ ତାଙ୍କୁ ଚତୁର୍ଥ ଶ୍ରେଣୀରେ ଗ୍ରହଣ କଲେ ।

ତଳ କ୍ଲାସରେ ନାମ ଲେଖା ହେବାର ଦେଖି ଅଶ୍ୱିନୀ ତୋଷ କାନ୍ଦିପକାଇଲେ । ପିତା ସାନ୍ତ୍ୱନା ଦେଇ କହିଲେ "ଚିନ୍ତା ନାହିଁ, ତୁ ଯେତେଦିନ କ୍ଲାସରେ ପ୍ରଥମ ହେଉଥିବୁ ମୁଁ ପ୍ରତ୍ୟହ ଗୋଟିଏ ଗୋଟିଏ ଟଙ୍କା ପୁରସ୍କାର ଦେବି, କିନ୍ତୁ ଦ୍ୱିତୀୟ ସ୍ଥାନ ପାଇଲେ ୫୦ ଅଣା ଦେବି ।" କେବଳ ମାତ୍ର ୨ । ୩ ଦିନ ଛଡ଼ା ଅନ୍ୟ ସବୁଦିନ ଅଶ୍ୱିନୀତୋଷ ଉକ୍ତ ବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ପିତାଙ୍କ ପାଖରୁ ଟଙ୍କାଏ ଲେଖାଏଁ ଆଦାୟ କରିଥିଲେ ।

ସେତେବେଳେ ଦ୍ୱାରକାନାଥ ମିତ୍ର କଲିକତା ହାଇକୋର୍ଟର ଜଜ୍ । ସେ ଗଙ୍ଗାପ୍ରସାଦଙ୍କର ବିଶେଷ ବନ୍ଧୁ ଥିଲେ । ଦିନେ ସେ ତାଙ୍କ ଘରକୁ ବୁଲି ଆସିଥିଲେ । ତାଙ୍କୁ ସେ ଦିନ ଖୁବ୍ ଆଦରଯତ୍ନ ସହିତ ଅଭ୍ୟର୍ଥନା କରା ଯାଇଥିଲା । ଅଶ୍ୱିନୀତୋଷ ପିତାଙ୍କୁ ପଚାରିଲେ ଯେ ଉକ୍ତ ଭଦ୍ରଲୋକ କିଏ ? ବାବା କହିଲେ ସେ ହେଉଛନ୍ତି ଜଣେ ହାଇକୋର୍ଟ ଜଜ୍ । ଏହା ଶୁଣି ଅଶ୍ୱିନୀତୋଷ ଭାବିଲେ ହାଇକୋର୍ଟ ଜଜ୍ ହେଲେ ସମସ୍ତେ ଖୁବ୍ ଶ୍ରଦ୍ଧା ସମ୍ମାନ କରନ୍ତି । ମୁଁ ମଧ୍ୟ ବଡ ହେଲେ ଏହି ହାଇକୋର୍ଟ ଜଜ୍ କାମ କରିବି । ଶିଶୁ କାଳର ଏହି ଆକାଙ୍କ୍ଷା ତାଙ୍କର ପୂରଣ ହୋଇଥିଲା ।

## ବିଦ୍ୟାସାଗର ଭେଟ

୧୮୭୯ ଖ୍ରୀଷ୍ଟାବ୍ଦ ଅପ୍ରେଲ ମାସରେ ଯେତେବେଳେ ଅଶ୍ୱିନୀତୋଷ ମୋଟେ ଦଶ ବର୍ଷର ପିଲା ସେତେବେଳେ ତାଙ୍କ ଛାତରେ ଜଣେ

ଗୋଟାଏ ବେମାର ଜନ୍ମିଲା । ସେଥି ନିମିତ୍ତ ସେ ଖୁବ କଷ୍ଟ ପାଉଥିଲେ । ଗଙ୍ଗାପ୍ରସାଦ ପ୍ରଥମେ ନିଜେ ଚିକିତ୍ସା କରି ଫଳ ନ ପାଇବାରୁ ସେତେବେଳକାର ବିଖ୍ୟାତ ଗୋରା ଡାକ୍ତର ଚାର୍ଲସ ସାହେବଙ୍କୁ ପୁଅର ଚିକିତ୍ସା ଭାର ଦେଲେ । ସାହେବ ତାଙ୍କୁ ବାୟୁ ପରିବର୍ତ୍ତନ କରିବା ପାଇଁ ପରାମର୍ଶ ଦେବାରୁ ଗଙ୍ଗାପ୍ରସାଦ ପୁଅକୁ ବାଧ୍ୟ ହୋଇ ମଥୁରାକୁ ପଠାଇଥିଲେ । ସେଠାରେ ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ଅଶୁତୋଷ ତାଙ୍କର ଘରେ ୮।୯ ମାସ ରହିଥିଲେ । ଏହି ସ୍ଥାନ ପରିବର୍ତ୍ତନ ଯୋଗୁଁ ତାଙ୍କର ସ୍ୱାସ୍ଥ୍ୟରେ ମଧ୍ୟ ଉନ୍ନତି ଘଟିଥିଲା । ତାପରେ ସେ ସେହି ବର୍ଷ ଡ଼ିସେମ୍ବର ମାସ ବେଳକୁ କଲିକତା ଫେରି ଆସିଥିଲେ ।

ମଥୁରାରୁ ଫେରି ଆସିଲା ବେଳେ ବାଳକ ଅଶୁତୋଷ ପ୍ରଥମ ଥର ଦର୍ଶନ କଲେ ବଙ୍ଗଳାର ଶ୍ରେଷ୍ଠତମ ସନ୍ତାନ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ । ପାଠଶାଳାରେ ଏହାଙ୍କ ବହି ପଢି ସେ ଅକ୍ଷର ଶିଖି ଥିଲେ । ବିଦ୍ୟାସାଗର ସେତେବେଳେ ପିତା ମାତାଙ୍କୁ ଦେଖା କରିବାକୁ କାଶୀ ଯାଉଥିଲେ । ମୋଗଲସରାଇ ଷ୍ଟେସନରେ ଗାଡ଼ି ବଦଳ ବେଳେ ଏହି ସାକ୍ଷାତ ହୋଇଥିଲା । ବିଦ୍ୟାସାଗର ମଧ୍ୟ ଗଙ୍ଗାପ୍ରସାଦଙ୍କୁ ଜାଣିଥିଲେ; ଏଣୁ ତାଙ୍କର ପୁଅକୁ ଦେଖି ଖୁସି ହୋଇ ଖଣ୍ଡିଏ "ରବିନସନ୍ କ୍ରୁଶୋ" ବହି ଉପହାର ଦେଇଥିଲେ । ଅଶୁତୋଷ ବହି ଖଣ୍ଡିକ ଦେବତାଙ୍କ ପ୍ରସାଦ ପରି ଗ୍ରହଣ କରି ନିଜକୁ ମହା ଭାଗ୍ୟବାନ ମନେ କରିଥିଲେ । ଆଜି ପର୍ଯ୍ୟନ୍ତ ଉକ୍ତ ବହି ଖଣ୍ଡିକ ତାଙ୍କ ବାସଗୃହରେ ଅତି ଯତ୍ନରେ ସଂରକ୍ଷିତ ।

ସାଉଥ ସୁବରବାନ୍ ସ୍କୁଲରେ ଅଶୁତୋଷଙ୍କର ଯେଉଁ ନାମ ଲେଖାଇବା କଥା ଇତିପୂର୍ବେ କୁହାଯାଇଅଛି ତାହା ଏହି ମଥୁରାରୁ ଫେରିବା ପରେ ଘଟିଥିଲା ଅର୍ଥାତ୍ ୧୮୭୨ ଖ୍ରୀଷ୍ଟାବ୍ଦର କଥା ।

ଦକ୍ଷିଣ କଲିକତାରେ ସେତେବେଳେ ଦୁଇଟି ହାଇସ୍କୁଲ ଖୁବ୍ ପ୍ରସିଦ୍ଧ ଥିଲା । ଗୋଟିଏ ହେଉଛି ଶିବନାଥ ଶାସ୍ତ୍ରୀଙ୍କର ସାଉଥ ସୁବର୍ବାନ୍ ସ୍କୁଲ ଏବଂ ଅନ୍ୟଟି ହେଉଛି ଗାର୍ଡେନରିଚର ମିସନାରୀ ସ୍କୁଲ । ଏହି ସ୍କୁଲରେ ଆମ ଓଡ଼ିଶାର ବରପୁତ୍ର ମଧୁସୂଦନ ଦାସ ହେଡ଼ମାଷ୍ଟର ଥିବାରୁ ତାଙ୍କ ପଢ଼ାଇବା ରୀତିଯୋଗୁଁ ପ୍ରସିଦ୍ଧ ହୋଇଥିଲେ ।

ସ୍କୁଲରେ ନାମ ଲେଖାଇଲା ପରେ ପଢ଼ାପଢ଼ିରେ ଅଶୁତୋଷଙ୍କୁ ଟିକେ ମାତ୍ର କଷ୍ଟ ହୋଇ ନ ଥିଲା । ଯେହେତୁ ବୟସ ଊଣା ଯୋଗୁଁ ୪ର୍ଥ ଶ୍ରେଣୀରେ ନାମ ଲେଖାଇଲେ ମଧ୍ୟ ସେ ଘରେ ପ୍ରଥମ ଶ୍ରେଣୀ ପାଠ୍ୟ ପୁସ୍ତକ ଶେଷ କରିଥିଲେ । ଏଣୁକରି ସେ ସ୍କୁଲରୁ ଫେରି ଘରେ ଅନେକ ବଡ଼ ବଡ଼ ବହି ପଢ଼ିବାକୁ ଲାଗିଲେ । ସେ ବରାବର ବାବାଙ୍କୁ କହୁଥିଲେ, ମୁଁ "ହାଇକୋର୍ଟ ଜଜ୍ କାମ କରିବି ।" ତାଙ୍କର ଏହି ପ୍ରବଳ ଆକାଂକ୍ଷା ଦେଖି ଗଙ୍ଗାପ୍ରସାଦ ଭାବିଲେ, ଜଜ୍ ହେବାକୁ ହେଲେ ଭଲ ଓକିଲ ହେବାକୁ ଲୋଡ଼ା । ଓକିଲର ଗୁଣ ହେଉଛି ଭଲ ବକ୍ତୃତା କରି ପାରିବା, ଅଥଚ ଅଶୁତୋଷ ବରାବର ଲାଜକୁଳା । ଏମିତ ବଡ଼ ବଡ଼ ବହି ପଢ଼ି ତାହା ମନେ ରଖି ନେଉଥିଲେ ଏବଂ ପଚାରିଲେ କହି ଯାଉଥିଲେ; ମାତ୍ର ଛିଡ଼ା ହୋଇ ଦୁଇ ପଦ କହିବାକୁ ଗଲେ ଦେହ ଥରୁଥିଲା, ମୁହଁ ଖରା ବାଜି ଯାଉଥିଲା ।

ଏଣୁକରି ଗଙ୍ଗାପ୍ରସାଦ ପୁଅକୁ ବକ୍ତୃତା ଦେବାକୁ ଭଲ ଅଭ୍ୟାସ କରାଉଥିଲେ ଏବଂ ଗୋଟିଏ ଛୋଟ ଟେବୁଲ ଉପରେ ପୁଅକୁ ଠିଆ କରାଇ ପୁରୁଣା ପଢ଼ାକୁ ଆବୃତ୍ତି କରିବାକୁ କହୁଥିଲେ । ଆମ ମଧୁ ବାବୁଙ୍କର ସେତେବେଳେ ଭଲ ବକ୍ତା ଓ ଶିକ୍ଷକ ବୋଲି ନାଁ ଡାକ ହୋଇ ଯାଇଥାଏ । ଗଙ୍ଗାପ୍ରସାଦ ମଧୁ ବାବୁଙ୍କୁ ପୁଅର ଗୃହଶିକ୍ଷକରୂପେ

ନିଯୁକ୍ତ କରିଥିଲେ । ମଧୁ ବାବୁଙ୍କ ଠାରୁ ଇଂରେଜୀ ସାହିତ୍ୟର ବ୍ୟାଖ୍ୟା ଶୁଣି ଏବଂ ତାଙ୍କର ନିର୍ଭୀକ ସ୍ପଷ୍ଟବାଦୀତା ଦେଖି ଆଶୁତୋଷ ଏକାନ୍ତ ଚକିତ ହୋଇ ଯାଇଥିଲେ । ବାସ୍ତବରେ ଆଶୁତୋଷଙ୍କର ଜୀବନ ଗଢ଼ି ଦେଇଥିଲେ ମଧୁ ବାବୁ । ଆଶୁତୋଷ ପରବର୍ତ୍ତୀ ଜୀବନରେ ଦେଶରେ ସର୍ବୋଚ୍ଚସ୍ଥାନ ପାଇଥିଲେ ମଧ୍ୟ ମଧୁ ବାବୁଙ୍କୁ ଗୁରୁ ଜ୍ଞାନରେ ପୂଜା କରୁଥିଲେ ଏବଂ ବରାବର କହୁଥିଲେ ମୋ ଜୀବନର ସମସ୍ତ ଉନ୍ନତିର ମୂଳ କାରଣ ହେଉଛନ୍ତି ମଧୁ ବାବୁ ।

ଏହା ଛଡ଼ା ଗଙ୍ଗାପ୍ରସାଦ ପୁଅ ପାଇଁ ବକ୍ତୃତା ଦେବା ସମ୍ପର୍କରେ ଯେତେ ଇଂରାଜୀ ବହି ମିଳିଲା ସବୁତକ ସଂଗ୍ରହ କରି ଦେଇଥିଲେ । ସ୍କୁଲର ନିର୍ଦ୍ଦିଷ୍ଟ ପାଠ୍ୟ ପ୍ରସ୍ତୁତ କରିବାକୁ ଆଶୁତୋଷଙ୍କୁ ଆଦୌ ପରିଶ୍ରମ କରିବାକୁ ପଡୁ ନ ଥିଲା । ଥରେ ଆଖି ବୁଲାଇ ଦେଲେ ପଢ଼ା ହୋଇ ଯାଉଥିଲା ଏବଂ ପରୀକ୍ଷାରେ ସେ କ୍ଲାସରେ ପ୍ରଥମ ସ୍ଥାନ ପାଉଥିଲେ । ଅନ୍ୟ ସମୟରେ ସେ ବଡ଼ ବଡ଼ ବହି ପଢୁଥିଲେ ।

ସ୍ୱାସ୍ଥ୍ୟ ଭଲ ନ ଥିଲା ବୋଲି ବାବା ତାଙ୍କୁ ରାତିରେ ପଢ଼ାପଢ଼ି କରିବାକୁ ନିଷେଧ କରିଥିଲେ; ତଥାପି ସେ ଲୁଚିକରି ରାତି ଜାଗି ପଢୁଥିଲେ । ତାଙ୍କୁ ସବୁଠାରୁ ଭଲ ଲାଗୁଥିଲା ଅଙ୍କ କଷିବା ଏବଂ ଜ୍ୟାମିତି ସମ୍ପାଦ୍ୟ ସମାଧାନ କରିବା । ୪ର୍ଥ ଶ୍ରେଣୀରେ ପଢ଼ିଲାବେଳେ ସେ ଆଲଜେବ୍ରାର କଠିନ ଅଂଶ ଶେଷ କରିଥିଲେ ଏବଂ ସଂସ୍କୃତ ଶିଖିବା ଆରମ୍ଭ କରିଥିଲେ ।

୪ର୍ଥ ଶ୍ରେଣୀରୁ ତୃତୀୟ ଶ୍ରେଣୀକୁ ପ୍ରମୋଶନ ପାଇଲା ପରେ ଆଶୁତୋଷ ପ୍ରସିଦ୍ଧ ଇଂରେଜ କବି ମିଲ୍ଟନ୍‌ଙ୍କର "ପାରାଡାଇସ୍ ଲଷ୍ଟ" କାବ୍ୟ ମୁଖସ୍ଥ କରି ପକାଇଥିଲେ ଏବଂ ଜ୍ୟାମିତିର ପୁରା ରୁଲ୍ ଭାଗ ଯାକ ଖାତାରେ କଷି ଅଭ୍ୟାସ କରିଥିଲେ । ଏହା ଛଡ଼ା ମାର୍ଶମାନ ସାହେବଙ୍କ ଇତିହାସ ଖଣ୍ଡ, କଥାମାଳା, ଆଖ୍ୟାନମଞ୍ଜରୀ, ବୋଧୋଦୟ

ଚରିତାବଳୀ, ନୀତିପଥ ପ୍ରଭୃତି ବହିର ବଙ୍ଗଳା ଅନୁବାଦ କରିଥିଲେ । ୧୦ । ୧୧ ବର୍ଷ ଛାତ୍ର ପକ୍ଷରେ ଏସବୁ ଯେତିକି ଅସାଧାରଣ ସେତିକି ବିସ୍ମୟାବହ ଘଟଣା; କିନ୍ତୁ ଆଶୁତୋଷଙ୍କ ପରି ମେଧାବୀ ଛାତ୍ର ପକ୍ଷରେ ଏସବୁ କିଛି ଅସମ୍ଭବ ନ ଥିଲା ।

ସ୍କୁଲରେ ପ୍ରତି ବର୍ଷ ପ୍ରଥମ ହୋଇ ପ୍ରାଇଜ ପାଉଥିଲେ । ସେ ଦ୍ୱିତୀୟ ଶ୍ରେଣୀରେ ପଢିଲାବେଳେ ଏଫ୍. ଏ. କ୍ଲାସର ସମସ୍ତ ଅଙ୍କ ବହି ଶେଷ କରିଥିଲେ । ଇଉକ୍ଲିଡ଼ଙ୍କର ଜ୍ୟାମିତି ପୂର୍ବରୁ ସେ ଶିଖି ନେଇଥିଲେ । ଏତକରୁ ତାଙ୍କର ଗଣିତ ପ୍ରତି ଅନୁରାଗ ଏବଂ ଆକର୍ଷଣ ସହଜରେ ଜଣାପଡ଼େ । ସେ ଯେପରି ମେଧାବୀ ସେହିପରି ମନଯୋଗୀ ଛାତ୍ର ଥିଲେ । ସବୁବେଳେ ବହି ଧରି ପଢାରେ ବ୍ୟସ୍ତ ରହୁଥିଲେ । ସ୍କୁଲ ପାଠ୍ୟ ଛଡ଼ା ରାମାୟଣ, ମହାଭାରତ, ବିଦ୍ୟାସାଗର, ବଙ୍କିମଚନ୍ଦ୍ର ପ୍ରଭୃତିଙ୍କ ବହି ଓ ମାଇକେଲଙ୍କର ମେଘନାଦ ବଧ କାବ୍ୟ ତାଙ୍କର ଅତି ପ୍ରିୟ ବସ୍ତୁ ଥିଲା । ପ୍ରଥମ ଶ୍ରେଣୀରେ ପଢୁଥିଲାବେଳେ ତାଙ୍କ ଦେହସାରା ଅସଂଖ୍ୟ ବଥ ହୋଇଥିବାରୁ ସେ ବଡ଼ କଷ୍ଟ ପାଇଥିଲେ । ଏଥିପାଇଁ ଏଣ୍ଟ୍ରାନ୍ସ ପରୀକ୍ଷାରେ ସେ ପ୍ରଥମ ହୋଇ ନ ପାରି ଦ୍ୱିତୀୟ ହୋଇଥିଲେ । ସେ ବର୍ଷ ପ୍ରଥମ ହୋଇଥିଲେ ହିନ୍ଦୁ ସ୍କୁଲର ପ୍ରସନ୍ନକୁମାର କାରଫରମା ନାମକ ଜଣେ ଛାତ୍ର । ପ୍ରଥମ ସ୍ଥାନ ପାଇ ନ ପାରିବାରୁ ତାଙ୍କ ମନରେ ବଡ ଦୁଃଖ ଜାତ ହୋଇଥିଲା । ପ୍ରସନ୍ନକୁମାର ମଧ୍ୟ ଖୁବ୍ ମେଧାବୀ ଛାତ୍ର ଥିଲେ ଏବଂ ବୟସରେ ଆଶୁତୋଷଙ୍କଠାରୁ ବହୁତ ବଡ଼ ଥିଲେ । ଆଶୁତୋଷ ବର୍ତ୍ତମାନ ବଖା ଘ ଘଣ୍ଟାରେ ଭଳି ରୋଗୀ ପଢାପଢି କରି ପାରି ନ ଥିଲେ, ତଥାପି ସେ ଦୁଃଖ କରିଥିଲେ ।

## ବିବାହ

ଆଶୁତୋଷଙ୍କର ମାଆ ଥିଲେ ନୈଷ୍ଠିକ ବ୍ରାହ୍ମଣ କନ୍ୟା । ସେତେବେଳେ ଆମ ଦେଶରେ ବ୍ରାହ୍ମଣମାନଙ୍କ ଘରେ ଅତି ଅଳ୍ପ

ବସ୍ତରେ ବିବାହ ହେଉଥିଲା । ଅଶୁତୋଷଙ୍କର ଇଚ୍ଛା ନ ଥିଲେ ମଧ୍ୟ ମାଆଙ୍କ ଅନୁରୋଧରେ ଛାତ୍ରାବସ୍ଥାରେ ତାଙ୍କର ବିବାହ ହୋଇ ଯାଇଥିଲା । ଏହା ଘଟିଥିଲା ୧୮୭୭ ଖ୍ରୀଷ୍ଟାବ୍ଦରେ । କୃଷ୍ଣନଗର ନିବାସୀ ପ୍ରସିଦ୍ଧ ପଣ୍ଡିତ ବାମନାରାୟଣ ଭଟ୍ଟାଚାର୍ଯ୍ୟଙ୍କର ଏକ କନ୍ୟା ସହିତ ଅଶୁତୋଷଙ୍କର ବିବାହ କ୍ରିୟା ସମ୍ପନ୍ନ ହୋଇଥିଲା ଏବଂ ଏହି ବିବାହ ଫଳରେ ତାଙ୍କର ଦୁଇ ପୁଅ ଏବଂ ୩ । ୪ ଟି କନ୍ୟା ଜନ୍ମ ହୋଇଥିଲେ । ସେମାନେ ସମସ୍ତ ବଙ୍ଗଦେଶରେ ଖୁବ୍ ଖ୍ୟାତି ଅର୍ଜନ କରିଥିଲେ ।

## କଲେଜ ପଢ଼ା

୧୮୮୦ ଖ୍ରୀଷ୍ଟାବ୍ଦ ଜାନୁୟାରୀ ମାସରେ ଅଶୁତୋଷ ପ୍ରେସିଡେନ୍ସି କଲେଜରେ ନାମ ଲେଖାଇଥିଲେ । ସେତେବେଳେ କଲେଜର ପ୍ରିନ୍ସିପାଲ ଥିଲେ ସି. ଏଇଚ୍ ନାମକ ସାହେବ । ଇଂରେଜୀ ଅଧ୍ୟାପକ ଥିଲେ ମିଷ୍ଟର ଜେ. ଟେ. ସାହେବ; ଅଙ୍କ ଅଙ୍କ ଅଧ୍ୟାପକ ଥିଲେ ବିଖ୍ୟାତ ଗଣିତଜ୍ଞ ମିଷ୍ଟର ବୁଥ୍ । ସେତେବେଳେ ବ୍ୟାକରଣ ପଢାଉ- ଥିଲେ ଉବସନ୍ ସାହେବ ।

ବଡ଼ ଲୋକର ପୁଅ ହେଲେ ମଧ୍ୟ ଅଶୁତୋଷଙ୍କ ଧରଣ ଥିଲା ଅତି ସାଧାରଣ । ସେ ସାଧାରଣ ଧୋତି କାମିଜ ପିନ୍ଧି କଲେଜକୁ ଆସୁଥିଲେ । ଏଥିପାଇଁ ତାଙ୍କ ସହିତ ବେଶୀ ପିଲା ମିଳାମିଶା କରୁ ନ ଥିଲେ ଏବଂ ଅନେକ ତାଙ୍କୁ ମଫସଲିଆ ଜଙ୍ଗଲି ବୋଲି କହୁଥିଲେ । ମାତ୍ର ସେଥିରେ ସେ ବିଚଳିତ ହେଉ ନ ଥିଲେ ।

ତାଙ୍କର ଏହି ସାଧା ସିଧା ଧରଣ ଅଙ୍କ ଅଧ୍ୟାପକ ବୁଥ୍ ସାହେବଙ୍କୁ ଖୁବ୍ ଭଲ ଲାଗିଲା । ତତ୍ପରେ ଅଶୁତୋଷଙ୍କ ପଢ଼ା ପ୍ରତି ଅଗ୍ରହ ଓ ତୀକ୍ଷ୍ଣ ବୁଦ୍ଧି ଦେଖି ସେ ତାଙ୍କୁ ଖୁବ ସ୍ନେହ କରିବାକୁ ଲାଗିଲେ । କ୍ରମେ ସେ ସାହେବଙ୍କର ସବୁଠାରୁ ପ୍ରିୟ ଛାତ୍ର ହୋଇ

ଉଠିଲେ । ଏହାପରେ ଅଶ୍ଵିନୀଭୋଷଙ୍କ ପ୍ରତିଭା ଦେଖି ଅନ୍ୟ ଛାତ୍ର-
ମାନେ ଈର୍ଷା ତାମସା ଛାଡ଼ି ତାଙ୍କର ଅନୁରକ୍ତ ହୋଇ ପଡ଼ିଲେ ।
କଲେଜର ପ୍ରଥମ ବାର୍ଷିକ ଛାତ୍ର ଥିଲାବେଳେ ବୁଥ୍ ସାହେବଙ୍କ
ସାହାଯ୍ୟରେ ଅଶ୍ଵିନୀଭୋଷ ଏମ୍.ଏ. କ୍ଲାସର ସମସ୍ତ ଅଙ୍କ ଶେଷ କରିଥିଲେ
ଏବଂ କଲେଜ ଲାଇବ୍ରେରୀରେ ଯେତେ ପ୍ରକାର ଇଂରେଜୀ ଅଙ୍କ ବହି
ଥିଲା, ଅଳ୍ପ ଦିନ ଭିତରେ ସବୁତକ ମଧ୍ୟ ଶେଷ କରିଥିଲେ । ସେତେବେଳ-
ବେଳକୁ ତାଙ୍କୁ ମୋଟେ ୧୬ ବର୍ଷ ବୟସ ହୋଇଥିଲା । ସେତିକିବେଳେ
ଅଙ୍କ ଶାସ୍ତ୍ର ସମ୍ବନ୍ଧରେ ତାଙ୍କର ଗୋଟିଏ ପ୍ରବନ୍ଧ ଦେଶୀ ଜର ଏକ
ବିଖ୍ୟାତ ପତ୍ରିକାରେ ପ୍ରକାଶିତ ହୋଇଥିଲା ଏବଂ ଖୁବ୍ ପ୍ରଶଂସା ମଧ୍ୟ
ପାଇଥିଲା । ସେ କ୍ରମେ ବୁଝି ପାରିଲେ ଯେ ଭଲ ରକମ ଅଙ୍କ ବିଦ୍ୟା
ଚର୍ଚ୍ଚା କରିବାକୁ ହେଲେ ଫାରସୀ ଭାଷା ଶିଖିବା ଆବଶ୍ୟକ; ଯେହେତୁ
ସେତେବେଳେ ଇଂରେଜୀ ଭାଷାରେ ଭଲ ଅଙ୍କ ବହି ନ ଥିଲା । ସେ
ଫାରସୀ ଭାଷା ଶିକ୍ଷା କରିବାକୁ ଲାଗିଲେ ଏବଂ ଅଳ୍ପ ଦିନରେ ଉକ୍ତ
ଭାଷାରେ ଭଲ ରକମ ଦକ୍ଷତା ହାସଲ କରିଥିଲେ । ଅଙ୍କ ଛଡ଼ା
ଇତିହାସ ପଢ଼ିବା ପାଇଁ ସେ ସର୍ବଦା ଆଗ୍ରହୀ ଥିଲେ ଏବଂ ଆଉ
ପଢ଼ିବାକୁ ଭଲ ପାଉଥିଲେ ଇଂରେଜୀ, ସାହିତ୍ୟ ଓ ବିଜ୍ଞାନ ।

ଏଫ୍. ଏ. ପରୀକ୍ଷାରେ କିପରି ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ
ପାଇବେ ଏହି ଚିନ୍ତା ଅଶ୍ଵିନୀଭୋଷଙ୍କୁ ଆଚ୍ଛନ୍ନ କରିଥିଲା । ସେଥିପାଇଁ
ସେ ଦିନ ରାତି ଖାଲି ପଢ଼ାରେ ମାତି ରହିଥିଲେ । ଏହା ଫଳରେ
ତାଙ୍କର କଠିନ ଶିର ରୋଗ ଜନ୍ମିଲା ! ବାର ବହୁତ ଚିକିତ୍ସା
କରାଇଲେ ମଧ୍ୟ ଫଳ ହେଲା ନାହିଁ । ଏଣୁ ବାଧ୍ୟ ହୋଇ ତାଙ୍କୁ
କଟକରୁ ଦୁର୍ଗାପ୍ରସାଦଙ୍କ ପାଖକୁ ଗାଜୀପୁରକୁ ପଠାଇ ଦିଅଗଲା ।

ଗାଜୀପୁରକୁ ଆସି ମଧ୍ୟ ତାଙ୍କର ରୋଗ ଭଲ ହେଲା ନାହିଁ ।
କଲେକ୍ଟରଙ୍କ ବଙ୍ଗଳା ପାଖରେ ଗୋଟିଏ କୂଅ ଥାଏ । ସେଥିରୁ ପାଣି

କାଢ଼ି ସେ ସାଧୁଅସାଧୁଙ୍କ କହନ୍ତି । କୂଅ ମାଝରେ ଗୋଟାଏ ଝଙ୍କା ଗଛରେ ଗୋଟାଏ ବିରୁଡ଼ି ବସା ଥାଏ । ଦିନେ ଅଶୁତୋଷ କୂଅ ମୂଳେ ବସି ଗାଧୋଉ ଅଛନ୍ତି, ହଠାତେ ଜଣେ ଦୁଷ୍ଟ ପିଲା ଆସି ବିରୁଡ଼ି ବସାକୁ ଟେକା ଫିଙ୍ଗି ପଳାଇ ଗଲେ । ବିରୁଡ଼ିମାନେ ରାଗରେ ଆସି ଅଶୁତୋଷଙ୍କ ମୁଣ୍ଡ ଦେହ ସର୍ବାଙ୍ଗ ଦଂଶନ କଲେ । ଅସହ୍ୟ ଯନ୍ତ୍ରଣାରେ ଅଶୁତୋଷ ଛଟପଟ ହୋଇ ବେହୋସ ହୋଇଗଲେ । ୨୪ ଘଣ୍ଟା ପରେ ତାଙ୍କର ଚେତା ଫେରିଲା; ମାତ୍ର ଆଶ୍ଚର୍ଯ୍ୟର କଥା ଯେ ତାଙ୍କର ଶିର ରୋଗ ଏକାବେଳକେ ଭଲ ହୋଇଗଲା ; ସେ ଗାଜୀ-ପୁରରୁ ଫେରି ପୁଣି ଲେଖା ପଢ଼ାରେ ମନୋନିବେଶ କଲେ କିନ୍ତୁ ତାଙ୍କର ଭାଗ୍ୟ ଖରାପ ଥିଲା । ପରୀକ୍ଷାର ଠିକ ଦୁଇ ମାସ ପୂର୍ବରୁ ତାଙ୍କୁ ଟାଇଫଏଡ଼ ହେଲା । ପିତାଙ୍କ ଚିକିତ୍ସାରେ ସେ ରୋଗରୁ ଭଲ ହେଲେ ସତ; ମାତ୍ର ଖାଇବା ହାତଟା ଏତେ ଦୁର୍ବଳ ହୋଇଗଲା ଯେ ତାହା ହଲାଇ ପାରିଲେ ନାହିଁ । ସମସ୍ତେ କହୁଥିଲେ ଏ ବର୍ଷ ଆଉ ପରୀକ୍ଷା ଦେଇ ଲାଭ ନାହିଁ । ବୟସ ତ ବେଶୀ ନୁହେଁ । ଦେହ ପୂରା ଆରୋଗ୍ୟ ହେଲେ ଆଗାମୀ ବର୍ଷ ପରୀକ୍ଷା ଦେବ ; ମାତ୍ର ଆଶୁତୋଷ କାହାରି କଥା ନ ଶୁଣି ହେଁକୁ ଅଚଳ ହାତ ଓ ଦୁର୍ବଳ ଶରୀରରେ ୧୮[illegible]୧ ଖ୍ରୀଷ୍ଟାବ୍ଦରେ ଏଫ୍. ଏ. ପରୀକ୍ଷା ଦେଲେ । ସମସ୍ତେ ଭାବିଥିଲେ ପାଶ କରିବା କଠିନ ହେବ ମାତ୍ର ବିଶ୍ୱବିଦ୍ୟାଳୟରେ ତୃତୀୟ ହୋଇ ସେ ପାଶ କଲେ ।

ଏହାପରେ ଅଶୁତୋଷ ବି. ଏ. ପଢ଼ିଲେ । ସେ ସମୟକୁ ବି. ଏ. ପରୀକ୍ଷାରେ କ ଓ ଖ ଏପରି ଦୁଇଟି ବିଭାଗ ଥିଲା । 'କ' ବିଭାଗରେ ପାଠ୍ୟ ଥିଲା ଇଂରେଜୀ, ଅଙ୍କ, ସଂସ୍କୃତ, ଦର୍ଶନ, ଇତିହାସ ଓ ଅତିରିକ୍ତ ଗଣିତ—'ଖ' ବିଭାଗରେ ଥିଲା ଇଂରେଜୀ, ଅଙ୍କ, ପଦାର୍ଥବିଜ୍ଞାନ ରସାୟନ ଏବଂ ପ୍ରାକୃତିକ ଭୂଗୋଳ । ଏଥି ନିମିତ୍ତ 'ଖ' ବିଭାଗର ପାଠ୍ୟ ଖୁବ ସହଜ ଥିଲା ଏବଂ ବେଶୀ ଛାତ୍ର ଏହି ବିଭାଗରେ ନାମ

ଲେଖାଉଥିଲେ । ପ୍ରତ୍ୟେକ ଛାତ୍ରକୁ ୫ଟି ବିଷୟ ପଢ଼ିବାକୁ ହେଉଥିଲା । ଅଶ୍ୱିନୀଭୋଷ 'କ' ବିଭାଗରେ ନାମ ଲେଖାଇ ଦେଖିଲେ ଯେ ମାତ୍ର ୧୦ । ୧୨ ଜଣ ଛାତ୍ର ତାଙ୍କର ସହପାଠୀ । ସେହି ବିଭାଗର ପଢ଼ା ବଡ଼ କଠିନ ଥିବାରୁ ଶେଷକୁ ଅନ୍ୟମାନେ 'ଖ' ବିଭାଗକୁ ଗୁଳିଗଲେ । ଅଶ୍ୱିନୀଭୋଷ ଏକାକୀ 'କ' ବିଭାଗରେ ରହିଲେ ।

ଅଶ୍ୱିନୀଭୋଷଙ୍କୁ ଛାତ୍ର ହିସାବରେ ପାଇ ବୁଥ୍ ସାହେବ ବଡ଼ ଖୁସି ହେଲେ ଏବଂ ବି. ଏ. ଶ୍ରେଣୀର ଦୁଇବର୍ଷ ମଧ୍ୟରେ ତାଙ୍କୁ ଏମ. ଏ. ପରୀକ୍ଷା ପାଇଁ ଉପଯୁକ୍ତ କରି ଗଢ଼ିଦେଲେ । ବି. ଏ. ପରୀକ୍ଷା ଦେବା ପୂର୍ବରୁ ଅଶ୍ୱିନୀଭୋଷଙ୍କର ଆଉ ଗୋଟିଏ ମୌଳିକ ପ୍ରବନ୍ଧ କେମ୍ବ୍ରିଜ ପତ୍ରିକାରେ ପ୍ରକାଶିତ ହୋଇଥିଲା । ୧୮୮୪ ଖ୍ରୀଷ୍ଟାବ୍ଦରେ ବିଶ୍ୱ-ବିଦ୍ୟାଳୟରୁ ପ୍ରଥମ ସ୍ଥାନ ପାଇ ଅଶ୍ୱିନୀଭୋଷ ବି.ଏ. ପାଶ କଲେ । ଏହି ପରୀକ୍ଷାରେ ସେ ସବୁବିଷୟରେ ସର୍ବୋଚ୍ଚ ନମ୍ବର ପାଇଥିଲେ । ବି.ଏ. ପାଶ କରିବାର ଏକମାସ ପରେ ଅର୍ଥାତ୍ ୧୮୮୪ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସରେ ସେ ଇଂରେଜୀରେ ଏମ. ଏ. ପରୀକ୍ଷା ଦେବାକୁ ବାହାରିଲେ; ମାତ୍ର ଏକା ବର୍ଷରେ ଦୁଇଟି ପରୀକ୍ଷା ଦେବା ପାଇଁ ଅନୁମତି ପାଇଲେ ନାହିଁ । ଏଣୁକରି ୧୮୮୫ ଖ୍ରୀଷ୍ଟାବ୍ଦରେ ଅଙ୍କରେ ସେ ଏମ.ଏ. ପରୀକ୍ଷା ଦେଇ ପ୍ରଥମ ହୋଇ ପାଶ କଲେ । ଏହା ପରେ ୧୮୮୬ ରେ ସେ ବିଜ୍ଞାନରେ ଏମ. ଏ. ପାଶ କଲେ ଏବଂ ରାୟଚାନ୍ଦ, ପ୍ରେମଚାନ୍ଦ ପରୀକ୍ଷା ଦେଇ ଦଶହଜାର ଟଙ୍କା ବୃତ୍ତି ପାଇଥିଲେ ।

## ରାୟଚାନ୍ଦ ପରୀକ୍ଷା କଥା

କଲିକତା ବିଶ୍ୱବିଦ୍ୟାଳୟରେ ଏମ୍. ଏ. ପରୀକ୍ଷା ଛଡ଼ା ରାୟଚାନ୍ଦ ପ୍ରେମଚାନ୍ଦ ନାମକ ଗୋଟିଏ ପରୀକ୍ଷା ହେଉଥିଲା । ଏହି ପରୀକ୍ଷାରେ ଯେଉଁମାନେ ଅସାଧାରଣ ମୌଳିକ ଚିନ୍ତା ପ୍ରକାଶ କରୁଥିଲେ ତାଙ୍କୁ ପି. ଆର୍. ଏସ୍. ପଦ ମିଳୁଥିଲା । ଏହି ପଦ ପାଇଁକୁ ଥିଲା ଦଶହଜାର

ଟଙ୍କା ମୂଲ୍ୟର । ଅତଏବ ଭଲ ଭଲ ଛାତ୍ରମାନଙ୍କର ଏହା ଏକାନ୍ତ ଲୋଭନୀୟ ଆକାଂକ୍ଷା ଥିଲା ଏବଂ ଆଶୁତୋଷ ଏହି ପରୀକ୍ଷା ଦେବାକୁ ପିଲାଦିନୁ ଆଶା ପୋଷଣ କରୁଥିଲେ । ୧୮୮୩ ଖ୍ରୀଷ୍ଟାବ୍ଦରେ କଲିକତା ବିଶ୍ୱବିଦ୍ୟାଳୟ ଏହାକୁ ଉଠାଇ ଦେଇ ଉକ୍ତ ଦଶହଜାର ଟଙ୍କାରେ କେତେଜଣ ଛାତ୍ରଙ୍କୁ ବିଲାତ ପଠାଇବାକୁ ପ୍ରସ୍ତାବ କରିଥିଲେ । ଆଶୁତୋଷ ଏକଥା ଶୁଣି ଛାତ୍ରାବସ୍ଥାରେ ପ୍ରସ୍ତାବ ବିରୁଦ୍ଧରେ ଏକ ଯୁକ୍ତିପୂର୍ଣ୍ଣ ପୁସ୍ତିକା ବେନାମି ଛପାଇ ବିଶ୍ୱବିଦ୍ୟାଳୟର ସଦସ୍ୟମାନଙ୍କ ଭିତରେ ବିତରଣ କରିଥିଲେ । ତାଙ୍କର ଅକାଟ୍ୟ ଯୁକ୍ତିରେ ପ୍ରଭାବିତ ହୋଇ ସଦସ୍ୟମାନେ ଶେଷକୁ ଉକ୍ତ ପ୍ରସ୍ତାବ ବନ୍ଦ କରିଦେଇଥିଲେ ।

ସାର୍ ଉଇଲିୟମ ଜୋନ୍ସ ନାମକ ଜଣେ ହାଇକୋର୍ଟ ଜଜ୍ କଲିକତାରେ ପ୍ରାଚ୍ୟଗ୍ରନ୍ଥ ଆଲୋଚନା ପାଇଁ ଇଷ୍ଟଇଣ୍ଡିଆ କମ୍ପାନୀ ଅମଳରେ ଏକ ସମିତି ସ୍ଥାପନ କରିଥିଲେ । ସେଠାରେ ଭାରତବର୍ଷର ଓ ଏସିଆ ମହାଦେଶର ସବୁ ବିଷୟରେ ପ୍ରାଚୀନ ଗ୍ରନ୍ଥମାନ ସଂରକ୍ଷିତ ଏବଂ ସମିତି ଏହିସବୁ ଜ୍ଞାନବିଜ୍ଞାନ ଚର୍ଚ୍ଚାଯୋଗୁ ପୃଥିବୀପ୍ରସିଦ୍ଧ । ଦେଶର ସମସ୍ତ ପ୍ରସିଦ୍ଧ ପଣ୍ଡିତମାନେ ଏଥିର ସଭ୍ୟ । ଏହି ସଭ୍ୟପଦ ପାଇବା ମହା ଗୌରବର ବିଷୟ । ସାଧାରଣତଃ କୌଣସି ଅଳ୍ପ ବୟସର ବ୍ୟକ୍ତି ଏଠାରେ ସ୍ଥାନ ପାଉନଥିଲେ କିନ୍ତୁ ୧୮୮୬ ଖ୍ରୀଷ୍ଟାବ୍ଦରେ ଆଶୁତୋଷଙ୍କର ଅସାଧାରଣ ପାଣ୍ଡିତ୍ୟ ଯୋଗୁ ତାଙ୍କୁ ଏଥିର ସଭ୍ୟ କରାଯାଇଥିଲା । ପରେ ସେ ଏଥିର ସଭାପତି ଆସନ ଅଳଙ୍କୃତ କରିଥିଲେ ଏବଂ ତାଙ୍କର ଦୁଇ ପୁଅ ଓ ଜାମାତା ମଧ୍ୟ ସଭ୍ୟ ହୋଇଥିଲେ । ଏହି ସମିତି ଆଜି ପର୍ଯ୍ୟନ୍ତ ନିଜର ଖ୍ୟାତି ଅକ୍ଷୁଣ୍ଣ ରଖି କାମ କରୁଅଛି । ଆଶୁତୋଷ ୨୨ବର୍ଷ ବୟସରେ ଏହି ସମିତିର ସଭ୍ୟ ହୋଇଥିଲେ ଏବଂ ବୟସରେ ସବୁ ସଭ୍ୟଙ୍କଠାରୁ ସାନ ଥିଲେ । ସଭ୍ୟ ହେଲା ପରେ ସେ ନିୟମିତ ଭାବରେ ସମିତିର ଆଲୋଚନା ସଭାରେ

ଗଣିତ ବିଷୟରେ ମୌଳିକ ପ୍ରବନ୍ଧମାନ ଲେଖୁଥିଲେ । ଏକ ସାଙ୍ଗରେ ଏମ୍. ଏ. ପାଶ ଓ ରାୟ୍‌ଚାନ୍ଦ ପ୍ରେମଚାନ୍ଦ ବୃତ୍ତି ପାଇଲା ପରେ ଅଶୁତୋଷ ସିଟି କଲେଜରେ ଆଇନ କ୍ଲାସରେ ନାମ ଲେଖାଇଥିଲେ । ୩ବର୍ଷର ଆଇନ ପରୀକ୍ଷା ଦେଇ ଓକିଲ୍ ହେବାକୁ ପଡ଼ୁଥିଲା । ଅଶୁତୋଷ ୩ବର୍ଷରେ ୩ଗୋଟି ପରୀକ୍ଷା ଦେଇ ବି. ଏଲ. ପରୀକ୍ଷାରେ ପ୍ରଥମ ହୋଇ ୩ଥର ସୁବର୍ଣ୍ଣ ପଦକ ମଧ୍ୟ ପାଇଥିଲେ । ତାଙ୍କର ଏହି କ୍ରମାଗତ ପ୍ରଥମସ୍ଥାନ ଅଧିକାର କରି ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେବା ତଥା ସେତେବେଳେ ଦେଶର ସମସ୍ତ ପ୍ରସିଦ୍ଧ ବ୍ୟକ୍ତି ଜାଣିମାନ ଖୁବ୍ ପ୍ରଶଂସା କରିଥିଲେ । ୧୮୮୪ ଖ୍ରୀଷ୍ଟାବ୍ଦରୁ ୧୮୮୬ ଖ୍ରୀଷ୍ଟାବ୍ଦ ଯାଏ ଅଶୁତୋଷ ସିଟି କଲେଜରେ ଓକିଲାତି ପଢ଼ିଥିଲେ ଏବଂ ତା' ସାଙ୍ଗକୁ ସଂସ୍କୃତ କଲେଜର ବିଖ୍ୟାତ ପଣ୍ଡିତ ମଧୁସୂଦନ ସ୍ମୃତିରତ୍ନଙ୍କ ପାଖରୁ ସ୍ମୃତିଶାସ୍ତ୍ର ଶିକ୍ଷା ମଧ୍ୟ କରିଥିଲେ ।

୧୮୮୫ ଖ୍ରୀଷ୍ଟାବ୍ଦରେ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ କୁଳପତି ମିଷ୍ଟର ସି. ପି. ଇଲ୍‌ବର୍ଟ ସାହେବ ତାଙ୍କର ଅଜସ୍ର ପ୍ରଶଂସା ପ୍ରକାଶ୍ୟ ସଭାରେ କରିଥିଲେ । ମିଷ୍ଟର ଇଲ୍‌ବର୍ଟ ସାହେବ ଥିଲେ ବଡ଼ଲାଟଙ୍କର ଜଣେ ମନ୍ତ୍ରୀ । ଅଶୁତୋଷ ଇଚ୍ଛା କରିଥିଲେ ଅତି ସହଜରେ ଗୋଟିଏ ବଡ଼ ସରକାରୀ କାମ ପାଇ ପାରିଥାନ୍ତେ; ମାତ୍ର ପିଲାଦିନୁ ହାଇକୋର୍ଟ ଜଜ୍ ହେବାର ଯେଉଁ ପ୍ରବଳ ବାସନା ତାଙ୍କର ଥିଲା ସେଥିପାଇଁ ସେ ଅନ୍ୟ କୌଣସି କାମ ପ୍ରତି ମନ ବଳାଇ ନଥିଲେ ।

ଏମ୍. ଏ. ପାଶ କଲାପରେ ସେ ଗଣିତରେ ବି. ଏ ପରୀକ୍ଷାର ପରୀକ୍ଷକ ହେବାକୁ ଚେଷ୍ଟା କରିଥିଲେ । ବୁଥ୍ ସାହେବ ମଧ୍ୟ ତାଙ୍କୁ ସୁପାରିଶ କରିଥିଲେ କିନ୍ତୁ କର୍ତ୍ତୃପକ୍ଷ ସେ ବର୍ଷ ତାଙ୍କୁ ପରୀକ୍ଷକ କରିନଥିଲେ ମାତ୍ର ପରବର୍ତ୍ତୀ ବର୍ଷ ସେ ବି. ଏ. କାହିଁକି ଏମ୍. ଏ. ପରୀକ୍ଷାରେ ମଧ୍ୟ ପରୀକ୍ଷକ ହୋଇ ପାରିଥିଲେ । ଗଣିତଶାସ୍ତ୍ର ପ୍ରତି

ଆଶୁତୋଷଙ୍କର ଆଗ୍ରହ କେତେ ବେଶୀ ଥିଲା ତାହା ନିମ୍ନଲିଖିତ ଘଟଣାରୁ ଜଣାପଡ଼ିବ ।

ଭାରତ ଗଭର୍ଣ୍ଣମେଣ୍ଟଙ୍କ ଅଧୀନରେ ସେତେବେଳେ ଜଣେ ପ୍ରସିଦ୍ଧ ଗାଣିତକ ସର୍ଭେୟର ଜେନେରାଲ କାମ କରୁଥିଲେ । ତାଙ୍କ ପାଖରେ ଅନେକ ଭଲ ଭଲ ଅଙ୍କ ବହି ଥିଲା । ୧୮୮୭ ଖ୍ରୀଷ୍ଟାବ୍ଦରେ ଉକ୍ତ ସାହେବ ହଠାତ୍ ମରିଗଲେ । ଏଣୁ ତାଙ୍କର ସମସ୍ତ ମାଲମତା ନିଲାମ କରାଗଲା । ତାଙ୍କର ସଂଗୃହୀତ ବହି ଭିତରେ ଦୁଇଖଣ୍ଡି ମୂଲ୍ୟବାନ୍ ଗଣିତ ଗ୍ରନ୍ଥ ଥିଲା । ଅଶୁତୋଷ ସେ ଦୁଇଖଣ୍ଡି କିଣିବା ପାଇଁ କଲେଜରୁ ଯାଇଥିଲେ । ନିଲାମ ଡାକ ଆରମ୍ଭ ହେଲାବେଳକୁ ଦେଖିଲେ ଯେ ଜଣେ ମସ୍ତବଡ଼ ସାହେବ ଘୋଡ଼ାଗାଡ଼ିରେ ଆସି ନିଲାମକାରୀ ହାକିମଙ୍କ କାନରେ କଅଣ କହିଦେଇ ଚାଲିଗଲେ । ଏହାପରେ ଉକ୍ତ ବହି ଦୁଇଖଣ୍ଡି ପାଇଁ ନିଲାମ ଡକାଗଲା । ଅଶୁତୋଷ ବହିପାଇଁ ଯେତେ ଟଙ୍କା ଡାକ ଦିଅନ୍ତି ନିଲାମକାରୀ ତାହା ଅପେକ୍ଷା ଏକଟଙ୍କା ଅଧିକ ଡାକନ୍ତି । ଏହିପରି ବଢ଼ି ବଢ଼ି ବହି ଦୁଇଖଣ୍ଡି ୫୨୫୨୮ ଯାଏ ଗଲାରୁ ଅଶୁତୋଷ ତାହା ଛାଡ଼ିଦେଲେ । ତେବେ ତାହା ପାଇଁ ଏତେ ବେଶୀ ମୂଲ୍ୟ ହେଲା ଜାଣିବାକୁ ତାଙ୍କର କୌତୂହଳ ହେଲା । ସେ ନିଲାମକାରୀ ସାହେବଙ୍କୁ ସେକଥା ପଚାରିଲେ । ସାହେବ କହିଲେ ହାଇକୋର୍ଟ ଜଜ୍ ଓକେନଲି ସାହେବଙ୍କ ପାଇଁ ମୁଁ ଏହି ଦାମ ଦେଇଅଛି । ହାଇକୋର୍ଟ ଜଜ୍‌ଙ୍କ ସମ୍ବନ୍ଧରେ ଅଶୁତୋଷଙ୍କର ପିଲାଦିନୁ ଏତେ ଉଚ୍ଚ ଧାରଣା ଥିଲା ଯେ ସେ ନୀରବରେ ଫେରି ଆସିଲେ । ଏହାପରେ ଓକେନଲି ସାହେବ ପୁରୁଣା ବହି ଦୁଇ ଖଣ୍ଡର ଏତେ ବେଶୀ ମୂଲ୍ୟ ଦେବାରୁ ଆଶ୍ଚର୍ଯ୍ୟ ହୋଇଗଲେ । ସେପରି ବହି ପଢ଼ିବା ଲୋକ ଏ ଦେଶରେ କିଏ ଅଛି ଜାଣିବାକୁ ତାଙ୍କର ମଧ୍ୟ ଆଗ୍ରହ ହେଲା । ସେ ଖବର ନେଇ ବୁଝିଲେ ଯେ ଅଶୁତୋଷ ଏହି

ଡାକ ଦେଇଥିଲେ । ସାହେବ ଏଥିରେ ଖୁସୀ ହୋଇ ତାଙ୍କ ଘରକୁ ଯାଇ ତାଙ୍କ ସହିତ ସାକ୍ଷାତ ହୋଇଥିଲେ ଏବଂ ତାଙ୍କ ପ୍ରତିଭାରେ ମୁଗ୍ଧ ହୋଇ ଆନନ୍ଦ ମନରେ ଉକ୍ତ ବହି ଦୁଇଖଣ୍ଡି ତାଙ୍କୁ ଉପହାର ଦେଇଥିଲେ । ଆଶୁତୋଷ ମଧ୍ୟ ସାହେବଙ୍କ ସହିତ ସାକ୍ଷାତ ହୋଇ ନିଜକୁ ଭାଗ୍ୟବାନ୍ ମନେକରିଥିଲେ ।

## ଆଇନ ଅଧ୍ୟାପକ

କଲିକତା ହାଇକୋର୍ଟରେ ଓକିଲାତି କଲାବେଳେ ସେ ଯେଉଁ ଆଇନଜ୍ଞାନର ପରିଚୟ ଦେଇଥିଲେ ସେଥିରେ ବିସ୍ମିତ ହୋଇ କଲିକତା ବିଶ୍ୱବିଦ୍ୟାଳୟ ତାଙ୍କୁ ୧୮୯୮ ଖ୍ରୀଷ୍ଟାବ୍ଦରେ ଆଇନ ଅଧ୍ୟାପକ ଭାବରେ ନିଯୋଗ କରିଥିଲେ । ଏହି ପଦରେ ରହି ସେ ଯେଉଁ ବକ୍ତୃତାମାନ ଦେଇଥିଲେ ସେ ସବୁ ବିଶ୍ୱବିଦ୍ୟାଳୟ ବହି ଆକାରରେ ଛପାଇଥିଲେ ଏବଂ ଆଜି ପର୍ଯ୍ୟନ୍ତ ଅତ୍ୟନ୍ତ ଶିକ୍ଷାପ୍ରଦ ଆଇନ ଗ୍ରନ୍ଥ ହିସାବରେ ତାହା ସମଗ୍ର ଭାରତରେ ଆଦୃତ ହୋଇ ଆସୁଅଛି । ବିଲାତର ପ୍ରିଭି କାଉନ୍‌ସିଲ ବିଚାରକମାନେ ହିନ୍ଦୁ ଆଇନ ଘଟିତ କଠିନ ପ୍ରଶ୍ନମାନ ତାଙ୍କର ବହିରୁ ଗ୍ରହଣ କରି ଯିବାର ଜଣା ଯାଇଅଛି ।

## ବ୍ୟବସ୍ଥାପକ ସଭା

ସେତେବେଳେ ଆଜିକାଲି ପରି ବ୍ୟବସ୍ଥା ସଭା ନ ଥିଲା ; ଯାହା ଥିଲା ତାହା ଲାଟସାହେବଙ୍କ ଦ୍ୱାରା ମନୋନୀତ ବ୍ୟକ୍ତିଙ୍କର ଏକ ସଭା । ସଭାର କ୍ଷମତା ଗଭର୍ଣ୍ଣମେଣ୍ଟଙ୍କୁ ପରାମର୍ଶ ଦେବାରେ ସୀମାବଦ୍ଧ ଥିଲା । ତଥାପି ଏହି ସଭାର ସଭ୍ୟ ହେବା ଏକ ଗୌରବଜନକ ପଦ ଥିଲା । ୧୮୯୯ ଖ୍ରୀଷ୍ଟାବ୍ଦରୁ ୧୯୦୩ ଖ୍ରୀଷ୍ଟାବ୍ଦ ଯାଏ ଆଶୁତୋଷ ଏହି ଆଇନ ସଭାରେ ସଭ୍ୟ ମନୋନୀତ ହୋଇଥିଲେ ଏବଂ ସଭାରେ ନିଜର ଅକାଟ୍ୟ ଯୁକ୍ତିସମ୍ବଳିତ ବକ୍ତୃତା ଦ୍ୱାରା ଗଭର୍ଣ୍ଣମେଣ୍ଟଙ୍କର

ଦୃଷ୍ଟି ଆକର୍ଷଣ କରିଥିଲେ । ଏଥି ନିମିତ୍ତ ସେ ତହିଁକୁ ବେଙ୍ଗଲ ଲାଟଙ୍କର ଆଇନ ସଭାର ସଭ୍ୟ ମନୋନୀତ ହୋଇ ପାରିଥିଲେ । ଆଇନ ସଭାରେ ତାଙ୍କର ପ୍ରତିଭା ଏବଂ ଅକାଟ୍ୟ ଯୁକ୍ତି ତଥା ବାଗ୍ମିତା ଦେଖି ବେଙ୍ଗଲର ଲର୍ଡ କର୍ଜନଙ୍କର ସୁଦୃଷ୍ଟି ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲା । ସେ ଆଇନ ସଭାର ସଦସ୍ୟ ଭାବରେ ୧୯୦୪ ଖ୍ରୀଷ୍ଟାବ୍ଦ ଯାଏ କାମ କରିଥିଲେ ଏବଂ ସେହି ବର୍ଷ କଲିକତା ହାଇକୋର୍ଟର ଜଜ କାମ ପାଇବାରୁ ସେ ବ୍ୟବସ୍ଥା ସଭାର ସଭ୍ୟ ପଦରୁ ଇସ୍ତଫା ଦେଇଥିଲେ । ତାଙ୍କ ହାଇକୋର୍ଟ ଜଜ୍ ନିଯୁକ୍ତି କଥା ଏହା ପୂର୍ବରୁ କୁହାଯାଇଅଛି ।

## ବିଶ୍ୱବିଦ୍ୟାଳୟ କୁଳପତି

୧୯୦୬ ଖ୍ରୀଷ୍ଟାବ୍ଦ ବେଳକୁ ଆଶୁତୋଷ ଙ୍କ ଦେଶରେ କେବଳ ଯେ ପ୍ରସିଦ୍ଧ ଆଇନଜ୍ଞ ବୋଲି ପରିଚିତ ହୋଇ ପାରିଥିଲେ ଏମନ୍ତ ନୁହେଁ । ସର୍ବ ପ୍ରଧାନ ଶିକ୍ଷାବିତ୍ ଭାବରେ ତାଙ୍କର ଭାରତ-ବ୍ୟାପୀ ସୁଖ୍ୟାତି ହୋଇଥିଲା । ସୁତରାଂ ୧୯୦୬ ଖ୍ରୀଷ୍ଟାବ୍ଦରେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି କାମ ଖାଲି ହେବାରୁ ତାଙ୍କୁ ସେହି କାମ ଦିଆଗଲା । ସେହି ଦିନଠାରୁ ୧୯୧୪ ଖ୍ରୀଷ୍ଟାବ୍ଦ ଯାଏ ସେ ୪ଥର କଲିକତା ବିଶ୍ୱବିଦ୍ୟାଳୟର, କୁଳପତି କାମ କରିଥିଲେ ଏବଂ ବିଶ୍ୱବିଦ୍ୟାଳୟରେ ବହୁ ନୂତନ ବିଭାଗ ସୃଷ୍ଟି କରି ଖୋଜି ଖୋଜି ସୁଯୋଗ୍ୟ ଲୋକଙ୍କୁ ଅଧ୍ୟାପକ କାମ ଦେଇଥିଲେ ।

୧୮୮୯ ଖ୍ରୀଷ୍ଟାବ୍ଦରେ ଆଶୁତୋଷ କଲିକତା ବିଶ୍ୱବିଦ୍ୟାଳୟର ସଦସ୍ୟ ହେଲେ ଏବଂ ପରେ ଦଶବର୍ଷ ଯାଏ ତହିଁର ଭାଇସ୍ ଚାନ୍ସେଲର ହୋଇଥିଲେ । ହାଇକୋର୍ଟ ଜଜ୍ କାମ ତୁଲାଇଲା ପରେ ମଧ୍ୟ ଦିନରାତି ସେ ବିଶ୍ୱବିଦ୍ୟାଳୟ ପାଇଁ ଖଟୁଥିଲେ ଏବଂ ସେଥିପାଇଁ ବହୁ ବଡ଼ ବଡ଼ ଧନୀଙ୍କଠାରୁ କୋଟି କୋଟି ଟଙ୍କା ଚାନ୍ଦା ନେଇ ବିଶ୍ୱ-

ବିଦ୍ୟାଳୟରେ ନାନାଦି ନୂଆ ଓ ଉଚ୍ଚଶିକ୍ଷାର ବିଭାଗ ଖୋଲିଥିଲେ । ତାଙ୍କରି ଚେଷ୍ଟାରେ ଦେଶୀୟ ଭାଷାମାନଙ୍କରେ ବିଶ୍ୱବିଦ୍ୟାଳୟରେ ଉଚ୍ଚ ପରୀକ୍ଷା ଆରମ୍ଭ କରିଯାଇଥିଲା । କଲିକତା ବିଶ୍ୱବିଦ୍ୟାଳୟ ତାଙ୍କ ଅମଳରେ ସମଗ୍ର ଏସିଆ ମହାଦେଶରେ ସବୁଠାରୁ ବଡ଼ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଥିଲା ଏବଂ ଏଥିପାଇଁ ବିଶ୍ୱପ୍ରସିଦ୍ଧ ଅଧ୍ୟାପକମାନଙ୍କୁ ମଧ୍ୟ ସେ ଖୋଜି ଖୋଜି ନିଯୁକ୍ତ କରୁଥିଲେ । ଓଡ଼ିଶା, ବିହାର, ଆସାମ, ବର୍ମା, ସିଂହଳ ପ୍ରଭୃତି ଦେଶମାନ ଏହି ବିଶ୍ୱବିଦ୍ୟାଳୟର ଅଧୀନରେ ଥିଲା । ବର୍ତ୍ତମାନ ସେହି ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାନରେ ୯ ଗୋଟି ବିଶ୍ୱବିଦ୍ୟାଳୟ ହେଲଣି । ଆଶୁତୋଷଙ୍କ ଉଦ୍ୟମରେ ବଙ୍ଗ ଦେଶରେ ପ୍ରତି ବଡ଼ ବଡ଼ ଗ୍ରାମରେ ମଧ୍ୟ ହାଇସ୍କୁଲ ସ୍ଥାପିତ ହୋଇ ଉଚ୍ଚ ଶିକ୍ଷାର ନାହିଁ ନଥିବା ପ୍ରସାର ହୋଇଥିଲା । ଦେଶର ଘରେ ଘରେ ବି.ଏ. ପାସ୍ ଯୁବକ ଦେଖିବା ତାଙ୍କର ଇଚ୍ଛା ଥିଲା । ମାତ୍ର ସ୍ୱଦେଶୀ ଆନ୍ଦୋଳନରେ ଶିକ୍ଷିତ ଯୁବକମାନେ ଯୋଗ ଦେବାରୁ ଭାରତ ଗଭର୍ଣ୍ଣମେଣ୍ଟ ଉଚ୍ଚ ଶିକ୍ଷା ପ୍ରସାରର ସପକ୍ଷରେ ନ ଥିଲେ । ତଥାପି ଆଶୁତୋଷଙ୍କ ପରିଚାଳନାରେ ସରକାରଙ୍କ ଉକ୍ତ ନୀତି ବିଫଳ ହୋଇଥିଲା । ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟର ସିନେଟ ସଭାରେ ଅଧିକାଂଶ ସରକାରୀ ସଭ୍ୟ ଥିଲେ । ସେମାନେ ଆଶୁତୋଷଙ୍କର ଯୁକ୍ତି ଏବଂ ପାଣ୍ଡିତ୍ୟ ପ୍ରତି ଏତେଦୂର ଅନୁରକ୍ତ ଥିଲେ ଯେ ଆଶୁତୋଷ ବିଶ୍ୱବିଦ୍ୟାଳୟରେ ଯାହା କରିବାକୁ ଇଚ୍ଛା କରୁଥିଲେ ଏହି କର୍ମଚାରୀମାନେ ସରକାରଙ୍କ ସ୍ୱାର୍ଥବିରୁଦ୍ଧ ହେଲେ ମଧ୍ୟ ତାହା ସମର୍ଥନ କରୁଥିଲେ ।

### ବିଶ୍ୱବିଦ୍ୟାଳୟ କମିଶନ

ବଙ୍ଗଳାରେ ଯୁବକମାନେ କ୍ରମେ ଇଂରେଜ ବିଦ୍ୱେଷୀ ହେବାର ଦେଖି ଲର୍ଡ଼ କର୍ଜନ ବିଶ୍ୱବିଦ୍ୟାଳୟ ଭାଙ୍ଗିବା ପାଇଁ ଏବ ତହିଁର

ସ୍ୱାଧୀନତା ଖର୍ବ କରିବାପାଇଁ ଏକ କମିଶନ ବସାଇଥିଲେ; ମାତ୍ର ଆଶୁତୋଷଙ୍କ କାର୍ଯ୍ୟପଟୁତା ଓ ଯୁକ୍ତିରେ ଉକ୍ତ କମିଶନ ତାଙ୍କର ପକ୍ଷ ସମର୍ଥନ କରିଥିଲେ । ଦଶବର୍ଷ ଭାଇସ୍‌ଚାନ୍ସେଲର ଥିଲେ ମଧ୍ୟ ତାହା ପରେ ତାଙ୍କ ଜୀବତକାଳ ମଧ୍ୟରେ ଆଶୁତୋଷହିଁ ସେଠାର ସର୍ବେସର୍ବା ଥିଲେ । ତାଙ୍କ ଅମତରେ ସେଠାରେ କୌଣସି କାମ ହେଉ ନ ଥିଲା ଏବଂ ତାଙ୍କ ସମର୍ଥନ ନପାଇଲେ ଅନ୍ୟ କେହୁ ଭାଇସ୍‌ଚାନ୍ସେଲର ହୋଇ ପାରୁନଥିଲେ । ଲର୍ଡ଼ ଲିଟନ ବଙ୍ଗଳାର ଲାଟ ଥିଲା ବେଳେ ବିଶ୍ୱବିଦ୍ୟାଳୟ ନେଇ ଆଶୁତୋଷଙ୍କ ସହିତ ତୀବ୍ର ମତଭେଦ ଘଟିଲା । ଆଶୁତୋଷ ହାଇକୋର୍ଟ ଜଜ୍ ଥିଲେ ମଧ୍ୟ ଲାଟ ସାହେବଙ୍କୁ ଯେଉଁ କଡ଼ା ଚିଠି ଦେଇଥିଲେ ତହିଁରୁ ତାଙ୍କର ଦେଶପ୍ରେମ, ଶିକ୍ଷାନୁରାଗ, ସ୍ୱାଧୀନଚେତା ସ୍ପଷ୍ଟ ଭାବରେ ପ୍ରମାଣିତ । ଏ ଚିଠିପତ୍ରି ସାହେବ ମହଲରେ ହୁଲସ୍ଥୁଲ ପଡ଼ିଯାଇଥିଲା ଏବଂ ଲର୍ଡ ଲିଟନ ଅଗତ୍ୟା ଅଧିକ କିଛି ନକହି ନୀରବ ହୋଇ ଯାଇଥିଲେ । ସମଗ୍ର ଦେଶ ଓ ଜାତି ଆଶୁତୋଷଙ୍କୁ ଏକ ବାକ୍ୟରେ ସମର୍ଥନ କରିଥିଲା । ସେ ଜଜ୍ କାମରୁ ଏବଂ ବିଶ୍ୱବିଦ୍ୟାଳୟରୁ ଅଲଗା ହୋଇଗଲେ ମଧ୍ୟ ବିଶ୍ୱବିଦ୍ୟାଳୟର ସବୁ କାମରେ ତାଙ୍କର ପ୍ରଭାବ ଅପ୍ରତିହତ ଥିଲା ଏବଂ ପରବର୍ତ୍ତୀ ଯୁଗରେ ତାଙ୍କର କନିଷ୍ଠପୁତ୍ର ଓ ଜ୍ୱାଇଁ ସେଠାରେ ଦକ୍ଷତାର ସହିତ ଭାଇସ୍‌ଚାନ୍ସେଲର କାମ ତୁଲାଇ ଥିଲେ । ସି. ଭି. ରମଣ, ଡାକ୍ତର ରାଧାକୃଷ୍ଣ ପ୍ରଭୃତି ପ୍ରସିଦ୍ଧ ବୈଜ୍ଞାନିକଙ୍କୁ ପ୍ରଥମେହିଁ ଆଶୁତୋଷ ଚିହ୍ନିପାରି କଲିକତା ବିଶ୍ୱବିଦ୍ୟାଳୟରେ ନିଯୋଗ କରିଥିଲେ । ଆଜି ସେମାନେ ସମଗ୍ର ପୃଥିବୀରେ ଖ୍ୟାତି ଅର୍ଜନ କରିଅଛନ୍ତି । ବସ୍ତୁତଃ କଲିକତା ବିଶ୍ୱବିଦ୍ୟାଳୟ ଏବଂ ବଙ୍ଗାଳି ଜାତିର ସର୍ବବିଧ ଉନ୍ନତି ମୂଳରେ ଆଶୁତୋଷଙ୍କ ଅମ୍ଳାନ ପ୍ରତିଭା ଏବଂ କର୍ମକୁଶଳତା ବିଦ୍ୟମାନ ।

ସେ ନିଜର ନ୍ୟାୟବନ୍ତ ଏବଂ ନିର୍ଭୀକ ଗୁଣରୁ ସର୍ବତ୍ର ପୂଜିତ ହୋଇଥିଲେ ଏବଂ ସ୍ୱଇଚ୍ଛାମତେ ପାଠପଢ଼ି ବିବିଧ ବିଷୟରେ ପାଣ୍ଡିତ୍ୟର ଉପାଧିମାନ ପାଉଥିଲେ । ତାଙ୍କର ସରକାରୀ ପ୍ରଦତ୍ତ ନାଇଟ୍ ଉପାଧି ଥିଲେ ମଧ୍ୟ ପାଣ୍ଡିତ୍ୟର ଉପାଧିକୁ ସେ ଉଚ୍ଚ ବୋଲି ମନେ କରୁଥିଲେ ଏବଂ ଶେଷକୁ ଆମ ପୁରୀ ମୁକ୍ତିମଣ୍ଡପ ପଣ୍ଡିତସଭା ତାଙ୍କୁ ସରସ୍ୱତୀ ଉପାଧି ଦେଇ ବିଦ୍ୟାବନ୍ତଙ୍କୁ ସର୍ବପ୍ରଧାନ ପଦବୀ ଦେଇଥିଲା । ତାଙ୍କରି ଯୋଗୁ ସରକାରଙ୍କ ଦ୍ୱାରା ବିତାଡ଼ିତ ହେଲେ ମଧ୍ୟ ସୁଭାଷଚନ୍ଦ୍ର ବୋଷ ପୁଣି କଲେଜରେ ନାମ ଲେଖାଇବାର ସୁଯୋଗ ପାଇଥିଲେ । ବଙ୍ଗଳାର ଲୋକେ କହୁଥିଲେ ସେ ବଙ୍ଗଳାର ପୁରୁଷସିଂହ ଏବଂ ବଙ୍ଗଳା ପ୍ରସିଦ୍ଧ ଦୈନିକ ନାୟକ ପତ୍ରିକା ବରାବର ତାଙ୍କୁ ଲେଖୁଥିଲା "ନିଷ୍ଠାବାନ ସରସ୍ୱତୀ ।" ଥରେ ଲାଟସାହେବ ଦରବାର କରି ତାଙ୍କୁ ଉପାଧି ଦେଲା ବେଳେ କହିଥିଲେ " ତୁମର କେତେ ଉପାଧି ଅଛି ମୁଁ କହି ପାରିବି ନାହିଁ, ଅଉ ମଧ୍ୟ କେତେ ପାଇବ ମୁଁ ଭାବିପାରୁ ନାହିଁ ।"

## ହାଇକୋର୍ଟ ଜଜ୍

କଲିକତା ହାଇକୋର୍ଟରେ ଓକିଲାତି କରି କ୍ରମେ ଆଶୁତୋଷଙ୍କର ଖ୍ୟାତି ଏତେ ବଢ଼ିଗଲା ଯେ ସେ ମାସକୁ ଦଶ ହଜାର ଟଙ୍କାରୁ ବେଶି ଉପାର୍ଜନ କରିବାକୁ ଲାଗିଲେ । ତାଙ୍କର ଆଇନ ଜ୍ଞାନ ଏବଂ ଅନ୍ୟାନ୍ୟ ପାଣ୍ଡିତ୍ୟ ଗଭର୍ଣ୍ଣମେଣ୍ଟ ଆଗରୁ ଜାଣି ପାରିଥିଲେ ।

୧୯୦୫ ବେଳକୁ ଲର୍ଡ କର୍ଜନ ଭାରତର ବଡ଼ଲାଟ ଥିଲେ । ସେ ଜଣେ ଦାମ୍ଭିକ ଏବଂ ଗୁଣଜ୍ଞ ବ୍ୟକ୍ତି । ବଡ଼ଲାଟ ହିସାବରେ ସେ ଥିଲେ କଲିକତା ବିଶ୍ୱବିଦ୍ୟାଳୟର ଚାନ୍ସେଲର । ଏଥି ନିମିତ୍ତ ମଧ୍ୟ ସେ ଆଶୁତୋଷଙ୍କୁ ଭଲ ଭାବରେ ଜାଣିବାର ସୁଯୋଗ ପାଇଥିଲେ ।

ଏହାକିଛିବେଳେ କଲିକତା ହାଇକୋର୍ଟରେ ଗୋଟିଏ ଜଜ ପଦ ଖାଲି ହେଲା । ବଡ଼ଲାଟ ଏହି କାମ ପାଇଁ ଆଶୁତୋଷଙ୍କୁ ବାଛିଥିଲେ । ଆଶୁତୋଷଙ୍କର ଆବାଲ୍ୟ ସ୍ୱପ୍ନ ଏତେ କାଳକେ ସଫଳ ହେଲା । ତଥାପି ମାଆଙ୍କର ବିନା ଅନୁମତିରେ କୌଣସି କାମ କରନ୍ତି ନାହିଁ ବୋଲି ସେ ସାଙ୍ଗେ ସାଙ୍ଗେ କାମ ଗ୍ରହଣର ସ୍ୱୀକୃତି ନ ଦେଇ ମାଆଙ୍କୁ ଅନୁମତି ମାଗିଥିଲେ । ଏହି ଅନୁମତି ପାଇବାରୁ ସେ କଲିକତା ହାଇକୋର୍ଟରେ ପ୍ରଥମେ ହାଇକୋର୍ଟର ଜଜ୍ ହୋଇଥିଲେ ।

୧୯୦୨ ଖ୍ରୀଷ୍ଟାବ୍ଦରେ ସମ୍ରାଟ ସପ୍ତମ ଏଡ଼ୱାର୍ଡ଼ଙ୍କର ଅଭିଷେକ ଉତ୍ସବ ଲଣ୍ଡନରେ ପାଳିତ ହୋଇଥିଲା । ଏହି ଉତ୍ସବରେ ଯୋଗ ଦେବା ପାଇଁ ଭାରତବର୍ଷରୁ ବହୁ ରାଜା ମହାରାଜା ଏବଂ ସମ୍ଭ୍ରାନ୍ତ ବ୍ୟକ୍ତି ଯାଇଥିଲେ । ଲର୍ଡ କର୍ଜନ ଆଶୁତୋଷଙ୍କୁ ଲଣ୍ଡନ ପଠାଇବାକୁ ପ୍ରସ୍ତାବ କରିଥିଲେ ମାତ୍ର ମାଆଙ୍କଠାରୁ ଅନୁମତି ନ ପାଇବାରୁ ଆଶୁତୋଷ ଲଣ୍ଡନ ଯିବାକୁ ମନା କରିଦେଲେ । ଏକଥା ଶୁଣି ଲର୍ଡ କର୍ଜନ ରାଗି ଯାଇ କହିଲେ "ଆପଣଙ୍କ ମାଆଙ୍କୁ କହନ୍ତୁ ଭାରତବର୍ଷର ସମ୍ରାଟ ପ୍ରତିନିଧି ତୁମକୁ ବିଲାତ ଯିବାକୁ ଆଦେଶ ଦେଉଅଛନ୍ତି ।" ଏହା ଶୁଣି ଆଶୁତୋଷ ତତ୍‌କ୍ଷଣାତ୍ ଉତ୍ତର ଦେଇଥିଲେ "ମୋ ପକ୍ଷରେ ମୋ ମାଆଙ୍କର ଆଦେଶ ପୃଥିବୀର ଅନ୍ୟ ସମସ୍ତଙ୍କ ଅପେକ୍ଷା ମାନ୍ୟ, ତେଣୁ ମୁଁ ଯାଇ ପାରିବି ନାହିଁ ।" ଏଥିରୁ ତାଙ୍କ ମାତୃଭକ୍ତିର ସୁସ୍ପଷ୍ଟ ପ୍ରମାଣ ମିଳେ । ଲର୍ଡ କର୍ଜନଙ୍କ ଭଳି ବଡ଼ଲାଟଙ୍କୁ ମୁହେଁ ମୁହେଁ ଏପରି ଟାଣୁଆ ଜବାବ ଦେବା ଲୋକ ଭାରତରେ ଦ୍ୱିତୀୟ ନ ଥିଲେ । ଆନନ୍ଦର କଥା ଯେ ଏହି ଅପ୍ରିୟ ଉତ୍ତର ଶୁଣି ଲର୍ଡ କର୍ଜନ ଆଶୁତୋଷଙ୍କ ଉପରେ ବିରକ୍ତ ନ ହୋଇ ଅଧିକ ଅନୁରକ୍ତ ହୋଇଥିଲେ । ଏହି କଥା ଘଟିବାର ବହୁ ପୂର୍ବରୁ ଆଶୁତୋଷ କଲିକତା ବିଶ୍ୱବିଦ୍ୟାଳୟର ସଦସ୍ୟ ମନୋନୀତ ହୋଇଥାନ୍ତି ଏବଂ ସେହି ସୂତ୍ରରେ ଲର୍ଡ କର୍ଜନଙ୍କ ସହିତ ମଧ୍ୟ ପରିଚିତ ହୋଇଥାନ୍ତି ।

୧୯୦୬ ଖ୍ରୀଷ୍ଟାବ୍ଦରୁ ୧୯୨୦ ଯାଏ ଆଶୁତୋଷ କଲିକତା ହାଇକୋର୍ଟର ବିଚାରପତି ଏବଂ ଶେଷ ବର୍ଷ ତାଙ୍କର ଅସ୍ଥାୟୀ ଚିଫ୍ ଜଷ୍ଟିସ ହୋଇ ଅତ୍ୟନ୍ତ ସୁଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ରାୟ ବହୁଭିତରେ ଯେଉଁ ସବୁ ଅପିଲ୍ ପ୍ରିଭିକାଉନ୍‌ସିଲ୍‌କୁ ଯାଉଥିଲା ସେ ସବୁ ତାଙ୍କର ରାୟ କାଏମ ହେଉଥିଲା ।

ହାଇକୋର୍ଟରେ ବିଚାରପତି ଥାଇ ସେ ଏକାଧିକ ରାଜନୈତିକ ମକଦ୍ଦମା ବିଚାର କରିଥିଲେ ଏବଂ ସେଥିରେ ଯେଉଁ ନିର୍ଭୀକ ନିରପେକ୍ଷ ରାୟ ଦେଇଥିଲେ ତାହା ଆଦର୍ଶ ସ୍ଥାନୀୟ ହୋଇ ରହିଅଛି ।

ଜଜ୍ କାମ କରୁଥିଲା ବେଳେ ସେ ପୁଣି ଥରେ ୧୯୧୭ ଠାରୁ ୧୯୧୯ ଯାଏ ବିଶ୍ୱବିଦ୍ୟାଳୟର କମିଶନ ସଦସ୍ୟ ହୋଇ ଭାରତବର୍ଷର ବହୁ ଶିକ୍ଷାକେନ୍ଦ୍ର ପରିଦର୍ଶନ କରିଥିଲେ ଏବଂ ତାଙ୍କର ଅକାଟ୍ୟ ଯୁକ୍ତିରେ ପ୍ରଭାବିତ ହୋଇ କମିଶନ ଯେଉଁ ରିପୋର୍ଟ ଦେଇଥିଲା ତଦ୍ୱାରା ଗଭର୍ଣ୍ଣମେଣ୍ଟଙ୍କ ଅସଲ ଉଦ୍ଦେଶ୍ୟ ପଣ୍ଡ ହୋଇ ଯାଇଥିଲା । ଏକଥା ପୂର୍ବରୁ କୁହା ଯାଇଅଛି ।

୧୯୨୦ ଖ୍ରୀଷ୍ଟାବ୍ଦରେ ଆଶୁତୋଷ ହାଇକୋର୍ଟରୁ ଅବସର ଗ୍ରହଣ କଲେ ଏବଂ ୧୯୨୧ ଠାରୁ ୧୯୨୩ ଯାଏ ଦୁଇ ବର୍ଷ ପୁଣିଥରେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି କାମ କରିଥିଲେ । ୧୯୨୦ରେ କର୍ମରୁ ଅବସର ଗ୍ରହଣ କରିଥିଲେ ମଧ୍ୟ ତାଙ୍କ ପରି କର୍ମୀବ୍ୟକ୍ତି ଚୁପ-ଚୁପ ଘରେ ବସିବା ସମ୍ଭବ ନ ଥିଲା । ତେଣୁକରି ସେ ପୁଣି ହାଇକୋର୍ଟରେ ଓକିଲାତି ଆରମ୍ଭ କରିଥିଲେ । ଶତ ଶତ ବଡ଼ ବଡ଼ ମକଦ୍ଦମା ତାଙ୍କ ପାଖକୁ ଅପଟାଙ୍କଏଁ ଆସିବାକୁ ଲାଗିଲା ।

## ମୃତ୍ୟୁ

୧୯୨୪ ଖ୍ରୀଷ୍ଟାବ୍ଦରେ ବିହାରର ଡୁମାରଜ ରାଜା ତାଙ୍କୁ ଏକ ବଡ଼ ମକଦ୍ଦମାରେ ଓକିଲ କରି ପାଟଣା ହାଇକୋର୍ଟକୁ ନେଇଥିଲେ ।

ପାଟଣାରେ ପଡ଼ନ୍ତି ମକଦ୍ଦମା ଆରମ୍ଭ କରିବା ସଙ୍ଗେ ସଙ୍ଗେ ସେ ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ ଏବଂ ୩ଟି ଦିନ ଏପରି ଅସୁସ୍ଥ ରହି ସେ ସେହିବର୍ଷ ମଇ ମାସ ୨୫ ତାରିଖ ଦିନ ପରଲୋକ ଗମନକଲେ । ତାଙ୍କର ଆକସ୍ମିକ ମୃତ୍ୟୁରେ ସମଗ୍ର ଭାରତରେ ଶୋକର ଛାୟା ଖେଳିଗଲା । ବିଲାତ, ଆମେରିକା, ଜର୍ମାନ୍, ଫ୍ରାନ୍ସ ସବୁଆଡ଼ୁ ଶୋକ ଓ ସମବେଦନାର ହଜାର ହଜାର ବାର୍ତ୍ତା ଆସିଥିଲା ।

୧୯୨୧ ଖ୍ରୀଷ୍ଟାବ୍ଦରେ ମହାତ୍ମା ଗାନ୍ଧି ଭାରତବ୍ୟାପୀ ଅସହଯୋଗ ଆନ୍ଦୋଳନ ଚଳାଇଥିଲେ । ହଜାର ହଜାର ଛାତ୍ର ସ୍କୁଲ୍ କଲେଜ ଛାଡ଼ି ଜେଲ ବରଣ କଲେ ଏବଂ ଅସଂଖ୍ୟ ଶିକ୍ଷା ଅନୁଷ୍ଠାନ ଅଚଳ ହୋଇ ପଡ଼ିଥିଲା । ଦେଶବନ୍ଧୁ ଚିତ୍ତରଞ୍ଜନ ଓ ସୁଭାଷଚନ୍ଦ୍ର ବୋଷଙ୍କ ପ୍ରଭାବରେ ବଙ୍ଗଦେଶରେ ଏହି ଆନ୍ଦୋଳନ ସର୍ବବ୍ୟାପକ ହୋଇଥିଲା ଏବଂ କଲିକତା ସେ ବର୍ଷ ଯୁବରାଜଙ୍କ ଆଗମନରେ ସମଗ୍ର ସହର ନାହିଁ ନ ଥିବା ହରତାଳ ପାଳନ କରିଥିଲା । ଏ ଦୃଶ୍ୟରେ ସାହେବମାନଙ୍କର ହୃତ୍କମ୍ପ ଜନ୍ମି ଯାଇଥିଲା । ଆଶୁତୋଷ ଯଦି ଏତେବେଳେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି ନଥାନ୍ତେ ତେବେ ତାହା ନିଶ୍ଚୟ ଧ୍ୱଂସ ପାଇଥାନ୍ତା । କେବଳ ଆଶୁତୋଷଙ୍କର ବିରାଟ ବ୍ୟକ୍ତିତ୍ୱ ସେତେବେଳେ ବିଶ୍ୱବିଦ୍ୟାଳୟକୁ ଅକାଳ ମୃତ୍ୟୁରୁ ରକ୍ଷାକରି ପାରିଥିଲା କହିଲେ ଚଳେ ।

## ଅବସର ଗ୍ରହଣ

୧୯୨୩ ଖ୍ରୀଷ୍ଟାବ୍ଦରେ ଆଶୁତୋଷ ହାଇକୋର୍ଟ ଜଜ୍ କାମରୁ ଅବସର ଗ୍ରହଣ କରିଥିଲେ ।

## ବିରାଟ ପୁରୁଷତ୍ୱ

ଆଶୁତୋଷଙ୍କର ଖାଲି ଯେ ବିଦ୍ୟାନୁରାଗ ଅସାମାନ୍ୟ ଥିଲା ଏମନ୍ତ ନୁହେଁ । ତାଙ୍କପରି ଜାତିପ୍ରେମୀ ନ୍ୟାୟନିଷ୍ଠ ଏବଂ ନିର୍ଭୀକ-

ହୃଦୟ ବ୍ୟକ୍ତି ଏ ଯୁଗରେ ଦେଖିବାକୁ ବିରଳ । କୌଣସି ପ୍ରକାର ସ୍ୱାର୍ଥ କିମ୍ବା ମୋହବଶତଃ ତାଙ୍କୁ ନ୍ୟାୟ ଓ ସତ୍ୟପଥରୁ ଅଣୁମାତ୍ର ବିଚଳିତ କରି ପାରୁନଥିଲା । ସେ ଏପରି ଭାବରେ ଯୁକ୍ତି କରି ନିଜର କଥା ଉତ୍ଥାପନ କରୁଥିଲେ ଯେ କେହି ତାହା ଖଣ୍ଡନ କରିବାକୁ ସମର୍ଥ ହେଉନଥିଲା । ହାଇକୋର୍ଟ ଜଜ୍ ହିସାବରେ ସେ ଏପରି ଅନେକ ରାୟ ଦେଇ ଯାଇଛନ୍ତି ଏପରି ଅନେକ ଜଟିଳ ମକଦ୍ଦମା ଫଏସଲା କରିଛନ୍ତି ଯାହାକି ଆଜି ସୁଦ୍ଧା ଐତିହାସିକ ବିଚାର ପ୍ରଣାଳୀ ହୋଇ ରହିଅଛି ।

ଅଥଚ ଏହି ବିରାଟ ପୁରୁଷଙ୍କର ଦୈନନ୍ଦିନ ଅତି ସରଳ ଓ ନିରାଡମ୍ବର ଥିଲା । ପୋଷାକପତ୍ର ସାଜସଜ୍ଜାରେ ତାଙ୍କର ତିଳେମାତ୍ର ଅନୁରାଗ ନଥିଲା ଏବଂ ନିଷ୍ଠାପର ବ୍ରାହ୍ମଣ ହିସାବରେ ସେ ସନାତନ ହିନ୍ଦୁଧର୍ମରେ ବିଧିନିଷେଧ ଅକ୍ଷରେ ଅକ୍ଷରେ ମାନ୍ୟ କରି ଚଳୁଥିଲେ । ହିନ୍ଦୁଧର୍ମର ପୂଜାପଦ୍ଧତି ସେ ନିଜ ପରିବାରରେ ନିଷ୍ଠାର ସହିତ ଅନୁଷ୍ଠାନ କରୁଥିଲେ । ଥରେ ୧୯୨୨ରେ ଶ୍ରୀପଞ୍ଚମୀକୁ ତାଙ୍କ ଘରେ ପୂଜା କରିବାପାଇଁ ସେ ଖୋଜି ଖୋଜି ହିନ୍ଦୁ କଲେଜର ଓଡ଼ିଆ ସଂସ୍କୃତ ଶିକ୍ଷକ ରଘୁନାଥଙ୍କୁ ପୂଜାରି କରି ବରଣ କରିଥିଲେ ଏବଂ ପୂଜା ପରେ ସପରିବାରେ ରଘୁନାଥର ପାଦବନ୍ଦନା କରିଥିଲେ । ତାଙ୍କର ନିର୍ଭୀକପ୍ରାଣତା ସମ୍ବନ୍ଧରେ ଅନେକ କାହାଣୀ ବଙ୍ଗଳାରେ ପ୍ରସିଦ୍ଧ । ଥରେ ସେ ରେଲଗାଡ଼ିରେ ପ୍ରଥମ ଶ୍ରେଣୀରେ ଯାଉଥିଲେ । ଦୁଇପଟି ଛିଣ୍ଡା ଚଟି ଗାଡ଼ିର ଦୁଆର ମୁହଁର ଗୋଟିଏ ପାଖରେ ରଖି ସେ ଉପର ବେଞ୍ଚରେ ଶୋଇଥିଲେ । ହଠାତ୍ ଏକ ଷ୍ଟେସନରୁ ଜଣେ ସାହେବ ସେହି ବଖରାରେ ଚଢ଼ିଲେ । ଟଙ୍କା ପଇସା କାଗଜପତ୍ର ଓ ଘଡ଼ିଚେନ୍ ସମ୍ବଳିତ ନିଜର କୋଟ ଫିଟାଇ ସାହେବ ଅଲଗ୍ନୀରେ ଝୁଲାଇ ତଳ ଆସନରେ ବସିଲା ବେଳେ ଏହି ଛିଣ୍ଡା ଚଟିକୁ ଦେଖି

ଯୋଡାଟା ମାରି ତଳକୁ ଫିଙ୍ଗିଦେଲେ । ଗାଡ଼ି ଚାଲିଥାଏ, ଅଶୁତୋଷ ଏ ଦୃଶ୍ୟ ଦେଖି ନୀରବ ରହିଲେ । କିଛିକ୍ଷଣ ପରେ ସାହେବ ପରିସ୍ରା କରିବାକୁ ଗଲାରୁ ସେ ତଳକୁ ଓହ୍ଲାଇ ଆସି ସାହେବଙ୍କ ଜାମା କୋଟଟି ନେଇ ବାହାରକୁ ଫିଙ୍ଗିଦେଲେ ଏବଂ ଆପଣା ଜାଗାରେ ଯାଇଁ ବସିଲେ । ସାହେବ ପାଇଖାନା ଭିତରୁ ବାହାରି କୋଟ ନପାଇ ପଚାରିଲେ "ମୋ କୋଟ କୁଆଡେ ଗଲା ?" ଅଶୁତୋଷ ଅବିଚଳିତ କଣ୍ଠରେ ଉତ୍ତର ଦେଲେ "ମୋ ଚଟି ଖୋଜିବା ପାଇଁ ଯାଇଅଛି ।" ଏକଥା ଶୁଣି ସାହେବ ରାଗରେ ଅଗ୍ନିଶର୍ମା—ସେ ମୁଣି ଜାଣେ ଉଚ୍ଚପଦସ୍ଥ ସର୍କାରୀ କର୍ମଚାରୀ । ମାତ୍ରେ କି ସବୁବେ ଏପରି ଢଙ୍ଗ ଦେଖାଉଥାନ୍ତି । ଗାଡ଼ି ହଠାତ୍ ଷ୍ଟେସନରେ ପହଞ୍ଚିଗଲା । ସେଠାରେ ବହୁବ୍ୟକ୍ତି ଅଶୁତୋଷଙ୍କୁ ଭେଟିବା ପାଇଁ ଫୁଲମାଳଧରି ଠିଆ ହୋଇଥାନ୍ତି । ସେଥିଭିତରେ ଜିଲା ହାକିମମାନେ ମଧ୍ୟ ଥାଆନ୍ତି । ଏ ଦୃଶ୍ୟ ଦେଖି ସାହେବଙ୍କ ଚେତା ବସିଲା । ସେ ଉଚିତ ଶିକ୍ଷା ପାଇଲେ ବୋଲି ବୁଝିପାରି ଅଶୁତୋଷଙ୍କୁ କ୍ଷମାଭିକ୍ଷା କଲେ ଏବଂ ନିଜର ଜଙ୍ଗଲପଣ ସେହିଦିନଠାରୁ ଛାଡ଼ି ଦେଇଥିଲେ ।

ତାଙ୍କର ଉପାଧି ସହିତ ପୂରାନାମ ହେଉଛି ମାନ୍ୟବର ସାର୍ ଅଶୁତୋଷ ମୁଖାର୍ଜି, ସରସ୍ୱତୀ, ଶାସ୍ତ୍ରବାଚସ୍ପତି, ସମ୍ବୁଦ୍ଧାଗମ ଚକ୍ରବର୍ତ୍ତୀ; କେ.ଟି. ସି. ଏସ୍. ଆଇ, ଏମ୍. ଏ. ଡି. ଏଲ, ଡି. ଏସ୍. ସିପି. ଏଚ୍ଡି, ପି. ଆର. ଏସ୍, ଏଫ. ଆର. ଏ. ଏସ୍, ଏଫ, ଆର. ଏସ୍. ଆଇ ଇତ୍ୟାଦି ।

ଦେଶରେ ଏପରି କୌଣସି ଶିକ୍ଷା ଓ ସମାଜ କଲ୍ୟାଣ ଅନୁଷ୍ଠାନ ନ ଥିଲା ଯହିଁରେ କି ସେ କର୍ମକର୍ତ୍ତା ବା ସଦସ୍ୟ ହୋଇନଥିଲେ । ପ୍ରତି ବିଷୟକୁ ଅତି ଶୀଘ୍ର ସେ ଖୁବ୍ ଭଲ ଭାବରେ ବୁଝି ନେଉଥିଲେ ଏବଂ ନିଜର ତୀକ୍ଷ୍ଣ ମେଧା ବଳରେ ସେସବୁ

ବିଷୟର ନିଗୂଢ ତଥ୍ୟ ବାହାର କରି ପାରୁଥିଲେ । ପାଲିଭାଷାର ପ୍ରଚଳନ ଏବଂ ତତ୍ସହ ବୌଦ୍ଧଧର୍ମର ଅନୁଶୀଳନ ସାଧନକଳ୍ପେ ସେ କଲିକତାର ମହାବୋଧି ସମିତି ସ୍ଥାପନରେ ସକ୍ରିୟଭାବେ ସାହାଯ୍ୟ କରିଥିଲେ ଏବଂ ତହିଁର ସଭାପତି ହୋଇଥିଲେ । ଏହି ସମିତିର ଶାଖା ପୃଥିବୀରେ ସର୍ବତ୍ର ଫିଟିଥିଲା । ତାଙ୍କର ସାନ ପୁଅ ଶ୍ୟାମାପ୍ରସାଦ ମରିବା ଯାଏ ଏହି ସମିତିର ସଭାପତି ଥିଲେ ।

ସୁଭାଷଚନ୍ଦ୍ର ବୋଷ ଯେତେବେଳେ ପ୍ରେସିଡେନ୍ସି କଲେଜରେ ପଢୁଥିଲେ ସେତେବେଳେ ସେଠାର ଓଟେନ ସାହେବଙ୍କ ଭାରତ ପ୍ରତି ଅପମାନଜନକ ବାକ୍ୟ ପ୍ରୟୋଗ ଶୁଣି ପିଲାମାନେ ତାଙ୍କୁ ମାଡ଼ ଦେଇଥିଲେ । ଏଥିନିମିତ୍ତ ବଡ଼ ଗହଳ ପଡ଼ିଥିଲା । ପିଲାମାନେ ସମସ୍ତେ ଆଶୁତୋଷଙ୍କୁ ଧରାଧରି କରିବାରୁ ସେ କଲେଜର ପ୍ରିନ୍ସିପାଲ ଜେମସ୍ ସାହେବଙ୍କୁ ସେ ବିଷୟ ପଚାରିଥିଲେ । ସାହେବ ବଡ଼ ଉଦ୍ଧତପଣ ଦେଖାଇଥିଲେ । କଥାଟା ଶେଷେ ଶିକ୍ଷା ସଚିବ ଲିୟୁନ ସାହେବଙ୍କ ଯାଏ ଗଲା । ଜେମ୍ସ ସାହେବ ଏକଜିଦିଆ ଲୋକ ଥାଇ ତାଙ୍କୁ ଅପମାନ ଦେବାରୁ ସେହିଦିନ ତାଙ୍କୁ କାର୍ଯ୍ୟରୁ ଅନ୍ତର କରି ଦିଆଗଲା ।

ଆଶୁତୋଷ ଦେଶୀୟ ଭାଷାକୁ ବିଶ୍ୱବିଦ୍ୟାଳୟ ଏମ୍. ଏ. ଶ୍ରେଣୀରେ ସ୍ଥାନ ଦେଇଥିଲେ । ତାଙ୍କର ଚେଷ୍ଟାରେ ଆମ ଓଡ଼ିଆଭାଷା ମଧ୍ୟ କଲିକତା ବିଶ୍ୱବିଦ୍ୟାଳୟରେ ଉଚ୍ଚସ୍ଥାନ ପାଇଥିଲା ।

ଏହିପରି ଭାବରେ କେବଳ ମାତ୍ର ନିଜର ଯୋଗ୍ୟତା, ବିଦ୍ୟାବୁଦ୍ଧି ବଳରେ ଆଶୁତୋଷ ଏକା ବଙ୍ଗଳା ନୁହେଁ ସମଗ୍ର ଭାରତର ଛାତ୍ର ସମାଜରେ ଦେବତାର ଆସନ ପାଇଥିଲେ ଏବଂ ବିଶେଷ କରି ଦେଶର ମୁଖ ଉଜ୍ଜ୍ୱଳ କରି ଯାଇଅଛନ୍ତି । ଆଧୁନିକ ଶିକ୍ଷା ପଦ୍ଧତିର ସମୃଦ୍ଧ ଉନ୍ନତି ମୂଳରେ ଆଶୁତୋଷଙ୍କର ମଙ୍ଗଳହସ୍ତ ଯେ

କେତେଦୂର ନିହିତ ତାହା କେହି କଳନା କରିପାରିବେ ନାହିଁ । ବସ୍ତୁତଃ ସାକ୍ଷାତ ମା' ସରସ୍ୱତୀଙ୍କ ପରି ସେ ବିଦ୍ୟାର ଭଣ୍ଡାର ଥିଲେ ଏବଂ ତାଙ୍କର ପାଖରେ ଲକ୍ଷ୍ମୀ ସରସ୍ୱତୀ ସପତ୍ନୀବାଦ ଛାଡ଼ି ସତେ ଯେପରି ଏକତ୍ର ରହୁଥିଲେ ।

ଓଡ଼ିଶାର ସତ୍ୟବାଦୀ ବକୁଳ ବନରେ ଗୋପବନ୍ଧୁଙ୍କ ବିଦ୍ୟାଳୟ ଦେଖି ସେ ଏହାକୁ ପ୍ରାଚୀନ ଋଷି ଆଶ୍ରମ ବୋଲି ମନେ କରିଥିଲେ ଏବଂ ଗୋପବନ୍ଧୁଙ୍କ ପ୍ରତି ଖୁବ୍ ଆକୃଷ୍ଟ ହୋଇ ତାଙ୍କୁ କଲିକତା ବିଶ୍ୱବିଦ୍ୟାଳୟରେ ସଦସ୍ୟ ଓ ପରୀକ୍ଷକ ମଧ୍ୟ କରିଥିଲେ ।

ଇଂରେଜର ଦୋର୍ଦ୍ଦଣ୍ଡ ପ୍ରତାପ ବେଳେ ଏମିତିକା ଜଣେ ତେଜସ୍ୱୀ ନିର୍ଭୀକ ଓ ବିଦ୍ୱାନ ବ୍ୟକ୍ତି ଜନ୍ମ ହୋଇ ଏତେ କାମ କରିଗଲେ ଏହା ଦେଶ ଓ ଜାତି ପକ୍ଷରେ ଊଣା ଗୌରବର ବିଷୟ ନୁହେ ।



ମୁଦ୍ରାକର—ଶ୍ରୀ ପଦ୍ମଚରଣ ଦାଶ, ଶ୍ରୀ ସତ୍ୟନାରାୟଣ ପ୍ରେସ, କଟକ—୨

ପ୍ରାଇଜ୍ ଓ ଲାଇବ୍ରେରୀ ଉପଯୋଗୀ

## ଉତ୍କଳ ପ୍ରକାଶନୀର ଶ୍ରେଷ୍ଠ ଅବଦାନ

# ଅମର ଜୀବନୀମାଳା

ଲେଖକ :—ଲାଲା ନଗେନ୍ଦ୍ର କୁମାର ରାୟ

ବୁଦ୍ଧଦେବ
ଠାକୁର ଶ୍ରୀରାମକୃଷ୍ଣ ପରମହଂସ
ଶ୍ରୀ ଚୈତନ୍ୟ
ଖାରବେଳ
ଗଜପତି ପ୍ରତାପରୁଦ୍ର
ଯଯାତିକେଶରୀ
କୁଳବୃଦ୍ଧ ମଧୁସୂଦନ
କର୍ମବୀର ଗୌରୀଶଙ୍କର
ମାଇକେଲ ମଧୁସୂଦନ
ଈଶ୍ୱରଚନ୍ଦ୍ର ବିଦ୍ୟାସାଗର
କବିବର ରାଧାନାଥ ରାୟ
ସାମନ୍ତ ଚନ୍ଦ୍ରଶେଖର
ସାର୍ ଅଶୁତୋଷ
ଉତ୍କଳମଣି ଗୋପବନ୍ଧୁ
ମହାତ୍ମା ଗାନ୍ଧୀ

ପ୍ରତ୍ୟେକ ଖଣ୍ଡର ମୂଲ୍ୟ ଦଶଅଣା

**ଅନ୍ୟାନ୍ୟ ଜୀବନୀ ଶୀଘ୍ର ପ୍ରକାଶ ପାଇବ**

ପ୍ରାପ୍ତିସ୍ଥାନ :—

**ଦି ଉତ୍କଳ ଷ୍ଟୋର୍ସ**

ବାଲୁବଜାର, କଟକ—୨